# ରସ-ଲହରୀ

( ଅତିରିକ୍ତ ସାହିତ୍ୟ )

( ଚତୁର୍ଥ ଶ୍ରେଣୀ ନିମିତ୍ତ )

ସମ୍ପାଦକ ଓ ସଙ୍କଳୟିତା
ଶ୍ରୀ ରାମପ୍ରସାଦ ମହାନ୍ତି

ନୂତନ ସଂସ୍କରଣ
୧୯୬୧

ପ୍ରକାଶକ
ସାହିତ୍ୟ ସଦନ
କଟକ

ମୂଲ୍ୟ ନବେ ନୂଆ ପଇସା ମାତ୍ର

# ସୂଚୀ

| ବିଷୟ | | | ପୃଷ୍ଠା |
|---|---|---|---|







ଚାକୁଆ ଜହ୍ନ ହସଇ ଆଇ ବୁଢ଼ା ଅଜାଙ୍କ ପାଖେ,
ଆକାଶେ ଚନ୍ଦ ଉଠିଲେ କହିଁ ହସେ ସରସୀ ବୁକେ ।
ନିମିଷ ପାଇଁ କଳା ବଉଦେ ବିଜୁଳି ନାଚି ହସେ,
ହସଇ ଯେବେ କୁସୁମ କଳି ଜଗତ ସାରା ବାସେ ।
ଭ୍ରମର ହସେ କୁସୁମ ପାଶେ, ଲଗାଇ ଛନ୍ଦଇ କଳ
ହସି ଟିକିଏ ମାଆଙ୍କ ପାଖେ କରନ୍ତୁ ସଦା ଅଳ ।
ବରଷା କାଳେ କଦମ୍ବ ହସେ; ଟଗର ହସେ ବନେ,
ପଉଷ ମାସେ ହସଇ ବିଲ ଭରି ପାଚିଲା ଧାନେ ।
ବସନ୍ତ ଯେବେ ଆସଇ ଚଳି ହସଇ ଧରା ରାଣୀ,
କୋକିଳ ହସେ ବନ ଗହଳେ ବୁହାଇ ମଧୁ ବାଣୀ ।
ସୂରୁଯ ଯେବେ ଯାଆନ୍ତି ବୁଡ଼ି କଅଁଳ ଝରା ହସ,
ସଞ୍ଜବେଳ ଆସିଲା ଜାଣି ଟିକି ଭାଇଟି ହସେ ।
ଦୁନିଆ ଗୋଟା ହସରେ ଭରା ହସଇ ଭାଇ ମୋର,
ହସିଲେ କୁନି ଜଗତ ହସେ ତା' ହସ ମନୋହର ।

ପ୍ରଶ୍ନ—୧ । କିଏ କେତେବେଳେ ହସେ ?

୨ । ଏ ଗୁଡ଼ିକର ଅର୍ଥ କହ—

ଭ୍ରମର, ସରସୀ, ବୁକୁ, ନିମିଷ, ମଧୁବାଣୀ, ମନୋହର ।

———

# ରାଜହଂସ

ସଭିଏଁ ତାକୁ କହନ୍ତି ଶଙ୍ଖପକ୍ଷୀ । କାରଣ ତା' ଦେହର ରଙ୍ଗ ସବୁବେଳେ ଶଙ୍ଖ ପରି ଝଟକୁଥାଏ । ତା'ରୂପ ଯେମିତି ସୁନ୍ଦର ଗୁଣ ବି ସେହିପରି । ପକ୍ଷୀମାନଙ୍କ ମଧ୍ୟରେ କେବେ କଳି ଝଗଡ଼ା ଲାଗିଲେ ଶଙ୍ଖପକ୍ଷୀ ପ୍ରଥମେ ଟିଆହୁଏ, କେଉଁପଦ ମିଠାକଥା କହି ସାଙ୍ଗେ ସାଙ୍ଗେ ଝଗଡ଼ା ଭାଙ୍ଗିଦିଏ । ବସା ତିଆରି କରିବାକୁ କାହାର ଖଣ୍ଡେ କାଠି କି ପୁଳାଏ ଚୁଣ୍ଡା ଅଖା ଦରକାର ହେଲେ, ସେ ଆଗ ବାହାରି ପଡ଼େ, କେଉଁଠୁ ହେଲେ ଖୋଜି ଆଣି ଯୋଗାଇ ଦିଏ । ଏ ସବୁ ଭଲ ଗୁଣ ଯୋଗୁଁ ସବୁ ପକ୍ଷୀ ତାକୁ ସେମାନଙ୍କର ସର୍ଦ୍ଦାର ରୂପେ ବାଛିଥିଲେ ।

ଦୁନିଆରେ ଶଙ୍ଖପକ୍ଷୀର କେବଳ ଗୋଟିଏ ଜଣକୁ ଅତି ପ୍ରିୟ ଥିଲା । ସେ ହେଉଛି ଜହ୍ନମାମୁଁ । ଯେତେବେଳେ ପୁନେଇଁ ରାତିରେ ଜହ୍ନମାମୁଁ ଝର୍ ଝର୍ ହୋଇ ହସିଉଠେ, ସେତେବେଳେ ଶଙ୍ଖପକ୍ଷୀର ଆନନ୍ଦ ଆଉ କିଏ ଦେଖେ ! ସାରା ରାତି ଚେଇଁ ରହି ଜହ୍ନମାମୁଁ ଆଡ଼କୁ ଅନାଇ ସେ ନିଜ ଭାଷାରେ କେତେ ଯେ ଗୀତ ଗାଇଯାଏ, ତାର ଠିକଣା ନାହିଁ ।

ଦିନେ ରାତି ସାରା ଶଙ୍ଖପକ୍ଷୀ ଫେରୁ ଫେରୁ ବାଟରେ ଭୁଲି ହୋଇଗଲା । କଟି କଟି ଅନ୍ଧାରରେ ତାକୁ ଆଉ ବାଟ ଦିଶିଲାନି । କୌଣସି ଉପାୟ ନପାଇ ଶେଷରେ ସେ ଗୋଟିଏ ଗଛର ଡାଳ ଉପରେ ବସିପଡ଼ିଲା । ଉଡ଼ଉଡ଼ି ହାଲିଆ ହୋଇଯାଇଥିବାରୁ ତା ଆଖି ଆପେ ଆପେ ବୁଜି ହୋଇଗଲା ।

କେତେ ... ଉତ୍ତାରୁ ତା ନିଦ ଭାଙ୍ଗିଲା । ଆଖି ଖୋଲି ଦେଖେ ତ ... ର ଗୋଟିଏ ପ୍ରକାଣ୍ଡ ବଗିଚା । ହଜାର ହଜାର ରଙ୍ଗ ବେରଙ୍ଗୀ ଫୁଲର ବାସନାରେ ଜାଗାଟି ମହକି ଉଠୁଥାଏ ।

ଏହି ସମୟରେ ସେଇ ଝଙ୍କାଳି ଭିତରୁ ଦେଖାଦେଲା ଗୋଟିଏ ପଗ୍ଲା । ହାତରେ ଧରିଥାଏ ଖଣ୍ଡେ ମହମବତି । ସେଇ ବତିଟିରୁ ଝରି ପଡୁଥାଏ ମେଞ୍ଚା ମେଞ୍ଚା ଆଲୁଅ, ଠିକ୍ ଜହ୍ନର ଚୋପା କିରଣ ପରି । ଶଙ୍ଖପକ୍ଷୀର ମନେହେଲା, ଯେପରି ବଗିଚାରେ ଆଉ ଗୋଟିଏ ଚନ୍ଦ୍ର ଉଇଁଛି । ସେ ଆନନ୍ଦରେ ଅଧୀର ହୋଇ ଗାଇବାକୁ ଆରମ୍ଭ କଲା—କେଁ ··ଉଁ···ଉଁ···କେଁ···।

ଅଚହ୍ନା ପକ୍ଷୀର ରବ ଶୁଣି ପଗ୍ଲାଟି ତା ପାଖକୁ ଧାଇଁଆସିଲା, ଦେଖେତ ଗୋଟାଏ ସୁନ୍ଦର ପକ୍ଷୀ । ପକ୍ଷୀଟି ପ୍ରତି ତାର ଭାରି ଲୋଭ ଜନ୍ମିଲା । ସେ ତାକୁ ସ୍ନେହରେ ପାଖକୁ ଡାକି କହିଲା, "ତୋ ନାଁ କ'ଣ ? ତୋ' ଗୀତ ଶୁଣି ମୋତେ ଭାରି ଖୁସି ଲାଗୁଚି । ତୁ ମୋ ପାଖରେ ରହିବୁ ?"

ଏହା ଶୁଣି ଶଙ୍ଖପକ୍ଷୀ କହିଲା, "ମୋ ନାଁ ଶଙ୍ଖପକ୍ଷୀ । ମୁଁ ତୁମ ପାଖରେ ଜାତିଭାଇଙ୍କୁ ଛାଡ଼ି ରହିଲେ, ସମସ୍ତେ ମୋତେ ନିନ୍ଦା କରିବେ ।"

ପଗ୍ଲାଟି ମୁହଁ ଶୁଖାଇ କହିଲା, "ଯେବେ ମୋ ପାଖରେ ତୋର ରହିବାକୁ ଇଚ୍ଛା ନାହିଁ, ତେବେ ମୁଁ ତୋତେ ବାଧ କରିବିନି, ମାତ୍ର ତୁ ମଝିରେ ମଝିରେ ଏଆଡ଼େ ଟିକିଏ ବୁଲି ଆସୁଥିବୁ । ତୋତେ ଦେଖି ଓ ତୋର ଗୀତ ଶୁଣି ମୁଁ ମୋ ମନ ଖୁସି କରିନେବି । ତୁ ମୋତେ ଆଜିଠୁ 'ଜୋଛନା ପଗ୍ଲା' ବୋଲି ଡାକିବୁ ।'

ଶଙ୍ଖପକ୍ଷୀ କହିଲା, "ଦେଖ ଜୋଛନା ପଗ୍ଲା ଆଉ ଅଳ୍ପ ଦିନ ପରେ ହାଡ଼ଭଙ୍ଗା ଶୀତ ଆରମ୍ଭ ହୋଇଯିବ । ସେତେବେଳେ ଥଣ୍ଡାରେ କିପରି ମୁଁ ତୁମ ପାଖକୁ ଆସିବି ?"

ସଙ୍ଗେ ସଙ୍ଗେ ଜୋଛନା ପରୀ ତା' ମୁଣି ଭିତରୁ ଖଣ୍ଡେ କୋଟ୍ ବାହାର କରି କହିଲା, "ଏଇ କୋଟ୍‌ଟିକୁ ନେଇଯା । ଶୀତ ଦିନେ ଏ କୋଟ୍ ଖଣ୍ଡିକ ପିନ୍ଧିଲେ କମା ଶୀତ ହେବନି ।" କୋଟ୍‌ଟିକୁ ଥଣ୍ଟରେ ଜାକି ପରୀକୁ ନମସ୍କାର ଜଣାଇ ଶଙ୍ଖ ବସାକୁ ଫେରିଗଲା ।

ଦିନେ ଶୀତ ରାତିରେ ଶଙ୍ଖପକ୍ଷୀଟି ଜାକିଜୁକି ହୋଇ ନିଜର ଗ୍ରୋଟ ବସାଟି ଭିତରେ ବସି ରହିଥାଏ । ଏତିକିବେଳେ ତା' ବସା ଭିତରକୁ ଗୋଟିଏ ଗ୍ରୋଟ କଣା ଦେଇ ଜହ୍ନର ଶୀତଳ କିରଣ ଲୁହାକୁ ଲୁହା ଝରିବାକୁ ଲଗିଲା । ଶଙ୍ଖପକ୍ଷୀ ଆନନ୍ଦରେ ଆକାଶକୁ ଅନାଇ ଦେଖିଲା, ଜହ୍ନ ହସୁଚି । ମନେ ମନେ ଭାବିଲା, ଏଡ଼େ ଶୀତ ରାତିରେ ଜହ୍ନମାମୁଁ କପରି ଏକୁଟିଆ ବଡ଼ ଆକାଶରେ ପହଁରୁଥିବେ । ତାଙ୍କୁ କ'ଣ ଶୀତ ହେଉ ନ ଥିବ ! ଦୁଃଖରେ ତା ମନଟି ଫାଟିଗଲା ।

ଏତିକିବେଳେ ପରୀ ଦେଇଥିବା କୋଟ୍ ଖଣ୍ଡିକର କଥା ତା'ର ମନେପଡ଼ିଗଲା । ସାଙ୍ଗେ ସାଙ୍ଗେ ସେ କୋଟ୍ ଖଣ୍ଡିକକୁ ଥଣ୍ଟରେ ଜାକି ବାହାରିଲା ଜହ୍ନମାମୁଁଙ୍କୁ ଦେବାକୁ । କପରି ଏଡ଼େ ଗ୍ରୋଟ ପକ୍ଷୀଟି ଏତେ ଦୂର ବାଟ ଉଡ଼ିଯାଇପାରନ୍ତା ? ଅଧବାଟରେ ଶୀତର କାଲୁଆ ପବନରେ ତାର ଡେଣା ଯୋଡ଼ିକ ଛିଡ଼ିଗଲା । ସେ ଆଉ ଆଗକୁ ଉଡ଼ିପାରିଲା ନାହିଁ । ଗଛ କାଟିଲାପରି ତଳେ ପଡ଼ି ଛଟପଟ ହେବାକୁ ଲଗିଲା ।

ଏହି ସମୟରେ ଜୋଛନା ପରୀ ବାହାରକୁ ବାହାରିଥାଏ । ସେ ତାର ଅତି ପ୍ରିୟ ପକ୍ଷୀଟିକୁ ଏପରି ଅବସ୍ଥାରେ ଦେଖି କାନ୍ଦିଉଠିଲା । ପକ୍ଷୀକୁ ଏସବୁର କାରଣ ପଚାରିବାରୁ ସେ ସବୁ କଥା ବଡ଼ କଷ୍ଟରେ କହି ହଠାତ୍ ସେଇଠି ମରିଗଲା ।

ଜୋଛନା ପରି କାନ୍ଦ କାନ୍ଦ ଶେଷରେ ଶଙ୍ଖପକ୍ଷୀର ମଲା ଦେହକୁ ଧରି ଜହ୍ନମାମୁଁଙ୍କ ପାଖକୁ ଗଲା । ସେଠାରେ ଜହ୍ନମାମୁଁଙ୍କୁ ମୂଳରୁ ଶେଷଯାଏ ସବୁ କଥା କହିଗଲା ।



ଜହ୍ନମାମୁଁ ତା କଥା ଶୁଣି ପାଖରେ ଥିବା ଅମୃତ କଳସରୁ ଆଞ୍ଜୁଳେ ଜଳ କାଢିଆଣି ଶଙ୍ଖପକ୍ଷୀର ଦେହ ଉପରେ ସିଞ୍ଚିଦେଲେ । ସାଙ୍ଗେ ସାଙ୍ଗେ ଶଙ୍ଖପକ୍ଷୀ ଜୀଇଁଉଠିଲା । ପାଖରେ ଜହ୍ନମାମୁଁଙ୍କୁ ଦେଖି ଆନନ୍ଦରେ କେତେ ରକମର ଗୀତ ଗାଇଗଲା ।

ଜହ୍ନମାମୁଁଙ୍କର ଖୁସି ବି କହିଲେ ନ ସରେ । ସ୍ନେହରେ ଶଙ୍ଖପକ୍ଷୀକୁ କୋଳ ଉପରେ ବସାଇ ତା ଡେଣା ଉପରେ ହାତ ବୁଲାଇବାକୁ ଲାଗିଲେ । ଚାହୁଁ ଚାହୁଁ ଆପେ ଆପେ ଦଓଟି ମସ୍ତବଡ଼ ଡେଣା ତା ପିଠି ଉପରେ ଗଜୁରି ଉଠିଲା ।

ଅନ୍ଧାରରେ ଜହ୍ନମାମୁଁ ଶଙ୍ଖପକ୍ଷୀକୁ କହିଲେ, "ଶ୍ରେଷ୍ଠ ପକ୍ଷୀ ହୋଇ ତୋର ମୋ ପ୍ରତି ଯେଉଁ ସ୍ନେହ ତାହା ମୁଁ ଭୁଲିପାରିବି ନାହିଁ । ଆଜଠୁ ଏହି ମୋଟା ଘର ଯୋଗୁଁ ତୋତେ ଆଉ ଶୀତ ବାଧିବନି । ତୁ ଇଚ୍ଛା କଲେ ଆକାଶରେ ଉଡ଼ିପାରିବୁ । ଆଉ ଜଳରେ ମଧ୍ୟ ପହଁରିପାରିବୁ । ତୋତେ ଆଜିଠୁଁ ସମସ୍ତେ ରାଜହଂସ ବୋଲି କହିବେ ।" ସେହିଦିନଠୁଁ ଶଙ୍ଖପକ୍ଷୀ ରାଜହଂସ ହେଲା ।

ପ୍ରଶ୍ନ— ୧ । ଶଙ୍ଖପକ୍ଷୀକୁ କୋଉଁନା ପକ୍ଷୀ କାହିଁକି କୋଟ ଦେଲା ?

୨ । ଶଙ୍ଖପକ୍ଷୀ କପରି ରାଜହଂସ ହେଲା ?

---

## ବାପଦବନ୍ଧ

କାଠଯୋଡ଼ ନଈ ଦୁଇ କୂଳ ଖାଇ,
ବହି ଯାଉଥିଲା କଳକଳେ
କେତେ ଦୂର ପଥ ପାହାଡ଼ ମୂଲକ
ଦେଇ ସେ ଆସିଛି ବଳେ ବଳେ ।
ଧାରା ଶ୍ରାବଣର ମାଳ ଆକାଶରେ
ଘୋଟି ଯାଇଥିଲା କଳା ଘନ,
ରବିର କିରଣ ଲୁଚିଯାଇଥିଲା
ଆଲୁଅ ଟିକଏ ଥିଲା ନାହିଁ ।
ନଈ କୂଳେ କୂଳେ ବନ୍ଧୁ ହୋଇଥିଲା
ସବୁଜ ଗାଲିଚ୍ଛ ଧରଣୀରେ,
କାହିଁ କେଉଁଠିଏ ପାଣି ଦାଢେ଼ ଦାଢେ଼
ଚରୁଥିଲା ମନ ସନ୍ତରେ ।

ନାଉରୀ ଭଇଟି ଗାଉଥିଲା ଗୀତ
କାତଟି ହରଷେ ମାରୁଥିଲା,
ଦୂର ବଣ ଆଡ଼ୁ ବାଘଛୁଆଟିଏ
ସୁଅ ଧାରେ ଭସି ଯାଉଥିଲା ।



ଏହି ସମୟରେ କାଳା ଗାଈ ଗୋଡ଼
ଖସିଗଲା କଡ଼ ଅତଡ଼ାରେ,
'ହୋ-ହୋ' ପାଟି କରୁଥିଲେ ଲୋକେ
'ଗାଈ ଭସିଗଲା ନଦୀଜଳେ' ।
ଗାଈ ବାଘଛୁଆ ଧରାଧରି ହୋଇ
ନଈବଢ଼ି ସୁଅରେ ଗଲା
କିଛି ଦୂର ଅନ୍ତେ ଗାଈ ଲାଗିଗଲା
ଥିଲା ଏକ ବଡ଼ ଚଡ଼ା-ବାଲି ।

ଗାଈ ଲାଞ୍ଜ ଧରି ବାଘଛୁଆ ଆସି
ଖାଲକୁଦାପରେ ଠିଆହେଲା,
ଅତି ଶରଧାରେ ସବୁବେଳେ ଖାଲି
ଗାଈର ଦେହକୁ ଚାଟୁଥିଲା ।
କାଳୀ ଗାଈ ହସି କହୁଥିଲା ସତେ,
"ବଲଘା ଭାଇ, ମୋର ହେଲେ ଅବା
ବିପଦ ପଡ଼ୁଛି ସବୁ ଭେଦ ଭୁଲି
ସେନେହେ ପୀରତି ଆଚରିବା ।"
ଦୁଇଦିନ ପରେ ଛୁଡ଼ିଗଲା ବନ୍ଧି
ବାଘ ଚାଲିଗଲା ଜଙ୍ଗଲକୁ
ଠିଆହୋଇ ଗାଈ ଚାହିଁଥିଲା ଦୂରେ
ଛଳ ଛଳ କରି ଆଖିଟାକୁ ।

ପ୍ରଶ୍ନ—୧ । ଗାଈ ଚରୁଥିବା ସମୟର ଦୃଶ୍ୟ ନିଜ କଥାରେ ପାଞ୍ଚଟି ବାକ୍ୟରେ କହ ।

୨ । ବାଘଛୁଆ ଜଙ୍ଗଲକୁ ଚାଲିଯିବା ପରେ ଗାଈ କାହିଁକି ତାକୁ ଚାହିଁ ରହିଥିଲା ?

୩ । ଶରଧା, ବଲଘା, ସେନେହ, ପୀରତି, ହରଷ— ଏଗୁଡ଼ିକ ଗଦ୍ୟରେ କଣ ହେବ ?

# ମୂର୍ଖଠାରୁ ଶିକ୍ଷା

ବହୁ ଯୁଗ ପୂର୍ବେ ବଶିଷ୍ଠ ନାମରେ ଜଣେ ବିଷ୍ଣୁଭକ୍ତ ଋଷି ସ୍ୱର୍ଗରେ ରହୁଥିଲେ । ଥରେ ସେ ଶୁଣିବାକୁ ପାଇଲେ—

ପୃଥିବୀରେ ନୈମିଷ ବୋଲି ଗୋଟିଏ ଘୋର ଜଙ୍ଗଲ ଅଛି । ସେହି ଜଙ୍ଗଲରେ କୃପାଳୁ ନାମକ ବଣୁଆ ଜାତିର ଜଣେ ଲୋକ ରହୁଛି । ସେ ସବୁବେଳେ ନିଜ କୁଡ଼ିଆରେ ରହୁଥାଏ; କେବେ ହେଲେ ଫଳମୂଳ ଆଣିବାକୁ ବାହାରକୁ ଯାଏ ନାହିଁ । ସେ ଡାକିଲେ ଗଛ ସବୁ ତା ପାଖକୁ ନଇଁଆସି ପାଚିଲା ଫଳଗୁଡ଼ିକୁ ଅଜାଡ଼ି ଦିଅନ୍ତି । କୃପାଳୁ ତା ଇଚ୍ଛା ଅନୁସାରେ ଫଳ ରଖିସାରିବା ପରେ ଗଛଗୁଡ଼ିକ ଉପରକୁ ଉଠି ଯାଆନ୍ତି ।

ଏହି କଥା ଶୁଣି ବଶିଷ୍ଠ ଦିନେ ନୈମିଷ ଅରଣ୍ୟକୁ ଆସି କୃପାଳୁର ନିକଟରେ ପହଞ୍ଚିଲେ । କୃପାଳୁ ଋଷିଙ୍କୁ ଯଥାବିଧି ସତ୍କାର କରି ପଚାରିଲା, "ଆପଣ କିଏ ? ମୋ ପାଖକୁ କାହିଁକି ଆସିଛନ୍ତି, ଦୟାକରି କହନ୍ତୁ ।"

ଋଷି କହିଲେ, "ମୋର ନାମ ବଶିଷ୍ଠ । ସ୍ୱର୍ଗରେ ଶୁଣିଲି, ତମେ ଗଛମାନଙ୍କୁ କୌଣସି ମନ୍ତ୍ର ପଢ଼ି ଡାକିଲେ ସେମାନେ ଆପେ ଆପେ ତୁମକୁ ଫଳ ଦେଇ ଫେରିଯାଉଛନ୍ତି । ମୋର ବିଶେଷ ଆଗ୍ରହ ହେଲା—ତମ ସହିତ ସାକ୍ଷାତ କରି ସେହି ବିଷୟଟି ଶିକ୍ଷା କରିବାପାଇଁ ।"

କୃପାଳୁ କହିଲା, "ଆପଣ ହେଉଛନ୍ତି ଋଷିମାନଙ୍କ ମଧ୍ୟରେ ଶ୍ରେଷ୍ଠ, ପୁଣି ବିଷ୍ଣୁଭକ୍ତ । ପୃଥିବୀର କୌଣସି କଥା ଆପଣଙ୍କୁ ଅଜଣା ନାହିଁ । ଆପଣଙ୍କୁ ଶିକ୍ଷା ଦେଲେ ମୋ ପରି ଗୋଟିଏ ଛୋଟ ଜାତି ମୂର୍ଖର ପାପ ହେବ । ତେଣୁ ମୁଁ ଆପଣଙ୍କ ନିକଟରେ କ୍ଷମା ମାଗୁଛି ।"

"ବଶିଷ୍ଠ କହିଲେ, 'ମୁଁ ତୁମଠାରୁ ଶିକ୍ଷାଲାଭ କରି ତୁମକୁ ଗୁରୁ ବୋଲି ସ୍ୱୀକାର ନ କଲେ ତୁମେ ପାପ ଭୋଗିବ; ଏହା ମୋତେ ଜଣା । ତେଣୁ ମୁଁ ନିଶ୍ଚୟ ତୁମକୁ ମୋର ଗୁରୁ ବୋଲି ପୂଜା କରିବ । ତୁମେ ମୋତେ ସେ ମନ୍ତ୍ରଟି ଶିଖାଇଦିଅ ।"

ଏତେ କହିଲେ ସୁଦ୍ଧା କୁପାକୁ ମନ୍ତ୍ରଟି ଶିଖାଇ ନପାରି ଋଷିଙ୍କୁ କ୍ଷମାମାଗି ଫେରିଗଲେ ।

ଅନେକ ଦିନ ପରେ ଅଚାନକ କୁପାକୁ ବାହାରକୁ ଯାଇଥାଏ । କେବଳ ତାର ପୁଅ ଦଣ୍ଡ ଘରେ ଥାଏ । ଏତିକବେଳେ ବଶିଷ୍ଠ ଆସି ପୁଣି ପହଞ୍ଚିଲେ । ଦଣ୍ଡ ଆଗରୁ ବଶିଷ୍ଠଙ୍କୁ ଚିହ୍ନିଥିଲା । ତେଣୁ ସେ ତାଙ୍କୁ ଯଥାବିଧି ମାନ୍ୟ କରି ପଚାରିଲା, "ଆପଣ କାହିଁକି ଆସିଛନ୍ତି ?"

ବଶିଷ୍ଠ ଉତ୍ତର ଦେଲେ, 'ମୁଁ ସେ ମନ୍ତ୍ରଟି କୁପାକୁଠାରୁ ଶିକ୍ଷା କରିବା ଲାଗି ଆତୁର ଥଲେ ଆସିଛୁ । କିନ୍ତୁ ସେ ତ ନାହିଁ, ମୁଁ ବର୍ତ୍ତମାନ ଏଠାରେ ରହିବି କାହିଁକି ?"

ଦଣ୍ଡ ବଶିଷ୍ଠଙ୍କ କଥା ଶୁଣି କହିଲେ, "ମୁଁ ସେ ମନ୍ତ୍ରଟି ଶିଖିଛି । ପୂର୍ବେ ବିଷ୍ଣୁ ମୋ ପିତାଙ୍କୁ ଏ ମନ୍ତ୍ରଟି ଶିଖାଇ ଦେଇଥିଲେ । ଆମ ବ୍ୟତୀତ ଏ ମନ୍ତ୍ରଟି ଅନ୍ୟ କେହି ଜାଣନ୍ତି ନାହିଁ; କିନ୍ତୁ ଆପଣ ଯଦି ସେହି ମନ୍ତ୍ର ଶିଖି ମତେ ଗୁରୁ ବୋଲି ନ ମାନିବେ ତାହାହେଲେ ଆମ୍ଭେମାନେ ନର୍କରେ ଦଣ୍ଡ ଭୋଗିବୁ ।"

ବଶିଷ୍ଠ କହିଲେ, "ମୁଁ ଶପଥ କରି କହୁଛି ଯେ ମନ୍ତ୍ରଟି ଶିକ୍ଷା କଲାପରେ ମୁଁ ତୁମକୁ ଗୁରୁ ରୂପେ ପୂଜା କରିବ ।"

ଜଙ୍ଗଲର ଗୋଟିଏ ନିଘୁଞ୍ଚିଆ ସ୍ଥାନରେ ଦଣ୍ଡ ଋଷିଙ୍କୁ ସେହି ମନ୍ତ୍ରଟି ଶିଖାଇଦେଲେ । ବଶିଷ୍ଠ ପରୀକ୍ଷା କରିବାପାଇଁ ମନ୍ତ୍ରଟି ପଢ଼ି ଗୋଟିଏ ଗଛକୁ ପାଖକୁ ଡାକିଲେ । ଗଛଟି ଆପେ ଆପେ ତଳକୁ ନଇଁ ଆସୁଥିବାର ଦେଖି ବଶିଷ୍ଠ ଠିକ୍ ମନ୍ତ୍ର ଶିକ୍ଷା କରିଛନ୍ତି ଜାଣି

ଖୁସିହେଲେ । ଏଣୁ, ସେ ଭକ୍ତିପୂର୍ବକ ଦଣ୍ଡଙ୍କ ପାଦ ତଳେ ପଡ଼ି ତାଙ୍କୁ ଗୁରୁରୂପେ ପୂଜା କଲେ ।



ଠିକ୍ ଏହି ସମୟରେ କୃଶାଶ୍ୱ [illegible] ସବୁ ଶୁଣି ବଡ଼ ଦୁଃଖିତ ହେଲେ । ସେ ଭାବିଲେ, ବଶିଷ୍ଠ ଯଦି ତାଙ୍କୁ ଗୁରୁ ବୋଲି ନ ମାନିବେ ତାହାହେଲେ ସେମାନେ ପାପ ଅର୍ଜିବେ । କିନ୍ତୁ ତାହା ହେଲା ନାହିଁ । ବଶିଷ୍ଠଙ୍କ କଥା ଅନୁସାରେ ଦେବଦୂତ ରଥ ଆଣି ସେମାନଙ୍କୁ ବସାଇ ସ୍ୱର୍ଗକୁ ନେଇଗଲେ ।

ଯେ କୌଣସି ଲୋକଠାରୁ କିଛି ଶିକ୍ଷା କଲେ ତାଙ୍କୁ ଗୁରୁରୂପେ ମାନିବା ଉଚିତ ।

ପ୍ରଶ୍ନ—୧ । କୃଶାଶ୍ୱଠାରୁ ବଶିଷ୍ଠ ଋଷି କଣ ଶିଖିବାକୁ ଯାଇଥିଲେ ?

୨ । ଦକ୍ଷପତ୍ର ଚମ୍ଭାର ଜାତିର ବାଳକକୁ ବଶିଷ୍ଠ କାହିଁକି ପୂଜା କଲେ ?




ଏଇ ଗାଆଁର ଧୂଳି
ହସି ହସିବା ସରବେ ଆତମ
ଦେହରେ ଝେଁବୁ ବୋଳ ।

ଏଇ ଗାଆଁର ପାଣି ପବନ
ମାଟି ଆଲୁଏ ଗଢ଼ା ଜୀବନ
ସବୁତ ଏଇ ମାଟିର ଦାନ
ପାରିବୁ ନାହିଁ ଭୁଲି ।

ସୂରୁଯ ଉଏଁ ପୂରୁବ ଦିଗେ
ଜୋଛନା ନାଚେ ଅତି ସରାଗେ
ଧଳା ଆଲୁଅ ସାରା ଗାଆଁଟି
ହସଇ ଖିଲ ଖିଲ ।

ଦୂର ପାହାଡ଼ କେଡ଼େ ସୁନ୍ଦର
ନଈଟି ବହେ କି ମନୋହର
ହାଟଙ୍କିନାଚକା ଗାଆନ୍ତି ଗୀତ
ପିଲାଏ ଫୁଲ ତୋଳି ।

ଘାଗୁଆ ବଢ଼ିଲେ — କେତେ ରଙ୍ଗରେ,
ସୁଲୁସୁଲିଆ, — ପବନ ଧୀରେ
ଉଚାଟିଣ ଆମ — ଖେଳାଏ ହସ
ଅବୁଝା ଗୀତ ବୋଲି !

ଦୋଳ, ଦଶହରା, — ରଜ ଆସିଲେ
ଗାଆଁ ମୁଣ୍ଡର — ବର ମୂଳରେ
ଗ୍ଲେଟ ପିଲାଏ — ମାରନ୍ତି ମଜା
ବାଗୁଡ଼ି ଖେଳ ଖେଳ ।

ଆମ ଗାଆଁଟି — ସରଗ ଭୂଇଁ
ଆନନ୍ଦେ କାଟେ — ଜୀବନ ନେଇଁ
ପ୍ରତି ରେଣୁଟି — ଦେବତା ଠାର
ପଡ଼େ ମୋ ମଥା ତଳ ।

ପ୍ରଶ୍ନ—୧ । ଗୋଟିଏ ଗ୍ରାମର ଦୃଶ୍ୟ ବର୍ଣ୍ଣନା କର ।

୨. । 'କ' ସ୍ତମ୍ଭରେ ଥିବା ପ୍ରତ୍ୟେକର ଅର୍ଥ 'ଖ' ସ୍ତମ୍ଭରୁ ଶବ୍ଦ ବାଛି ବାହାର କର ।

| 'କ'ସ୍ତମ୍ଭ | 'ଖ'ସ୍ତମ୍ଭ |
|---|---|
| ସରଗ | ସମସ୍ତେ |
| ପ୍ରାଣ | ଧୂଳି |
| ରେଣୁ | ଆନନ୍ଦ |
| ସରବେ | କିରଣ |
| ଜୋଛନା | ହୃଦୟ |

# ବାଘ ରଜା ର ବୁଦ୍ଧି ଗୁଡ଼ୁମ୍

ଅଗନାଅଗିନା ବନସ୍ତ ଭିତରେ ଗୋଟିଏ ଝାମ୍ପୁରିଆ କିଆ ବୁଦା । ତାହାର ମୂଳରେ ଗୋଟିଏ ବାଲୁଆ ଓ ଗୋଟିଏ ମାଈ ବାଲୁଆ ଗାତ କରି ରହୁଥାଆନ୍ତି । ଜାଗାଟି ଖୁବ ସୁନ୍ଦର । ଝରଣାଟି ଅଳ୍ପ ଦୂରରେ ବହିଯାଉଥାଏ । ସେଠାରେ ଗଛଗୁଡ଼ିକ ଫୁଲ ଫଳରେ ଭରା । ଏତେ ଭଲରେ ରହି ମଧ୍ୟ ବାଲୁଆ ଦୁହିଁଙ୍କର ପିଲାପିଲି ନ ଥିବାରୁ ମନରେ ସଦାବେଳେ ଦୁଃଖ । ସେମାନେ ବହୁ ଦିଅଁ ଦେବତା ମନାସିଲେ । ଭଲକରି ଭୋଗରାଗ କରିବେ ବୋଲି ମାନସିକ କଲେ ।

ଯାହା ହେଉ, ଶେଷରେ ତାଙ୍କର ଦୁଃଖ ଗଲା । ଭଗବାନଙ୍କ ଦୟାରୁ ତାଙ୍କର ଦୁଇଟି ସୁନ୍ଦର ପୁଅ ହେଲେ । ପୁଅ ଦୁଇଟିଙ୍କୁ ପାଇ ସେମାନେ ଖୁବ ଖୁସି ।

ଆଗେ ଦୁଇଟିଯାକ ବାଲୁଆ ସାଙ୍ଗହୋଇ ଶିକାରକୁ ଯାଉଥିଲେ, ମାତ୍ର ବର୍ତ୍ତମାନ ମାଈ ବାଲୁଆ ଛୁଆଙ୍କୁ ଜଗିରହିଲା । ବାଲୁଆ ଏକୁଟିଆ ଶିକାରକୁ ଯିବାକୁ ଲାଗିଲା ।

ବାଲୁଆ ଘରକୁ ଯେଉଁ ଦିନ ଗୋଟାଏ ଭଲ ଶିକାର ଆଣିଥାଏ, ସେଦିନ ନିଶ ଫୁଲାଇ ମିଛରେ ହେଲେ ସ୍ତ୍ରୀକୁ କହେ, "ଆଜି ଏନ୍ତି ଶିକାରଟି ଆସୁ ଆସୁ ଯାହା ଘଟିଲା, ତୁ ଥିଲେ ଡରି ବେହୋସ ହୋଇଯାଇ ଥାଆନ୍ତୁ ।"

ମାଈ ବାଲୁଆ ଡରି ଯାଇ ପଚାରେ, "କଣ ହେଲା କି ?"

ବାଲୁଆ ଗର୍ବରେ ଛାତିଫୁଲାଇ ଗପି ଚାଲେ, "ଆଜି ଶିକାରରୁ ଆସୁ ଆସୁ ବାଟରେ ବାଘମାମୁଁକୁ ଭେଟିଲି । ସେ ରାଗରେ ଗର ଗର ହୋଇ, ଆଖି ଦୁଇଟା ବୁଲାଇ ଗୋଟାଏ ବଡ଼ ଗର୍ଜନ

ହୋଇ ମୋ ଆଗରେ ଠିଆ ହୋଇ କହିଲା, "ମୋତେ ଏ ଶିକାରଟି ଦେ । ଶିକାର ନ ଦେଲେ ତୋତେ ମଧ୍ୟ ତା ସହିତ ଖାଇଦେବି ।

"ମୁଁ କଣ ତା ଗର୍ଜନକୁ ଡରିବା ଜନ୍ତୁ ! ହଠାତ୍ ଦୌଡ଼ିଯାଇ ତା ବେକମୁଣ୍ଡାକୁ କୁଦି ମାଡ଼ିବସିଲି । ଶେଷରେ ସେ କେତେ ନେହୁରା ହୋଇ କହିବାରୁ ଦୟାକରି ଛାଡ଼ି ଦେଲି ।" ବିଲୁଆର ସ୍ତ୍ରୀ ତ ମାଈପି ଲୋକ, ସେ ଏସବୁ କଥାକୁ ସତ ମଣି ରହେ ।

ତିନି ମାସ ଗଲା, ଚାରି ମାସ ଗଲା, ଛୁଆ ଦୁହେଁ ବଡ଼ିବାରୁ ସେମାନଙ୍କ ବଳ ହୋଇଗଲା । ତେଣୁ 'ମା' ଛୁଆଙ୍କୁ ଏକୁଟିଆ ଗୁମ୍ଫାରେ ଛାଡ଼ି ପୂର୍ବପରି ଦିନେ ବିଲୁଆ ସାଙ୍ଗରେ ଶିକାରକୁ ଗଲା ।

ସେଦିନ ସେମାନେ ଫେରୁଥାନ୍ତି । ଦୈବାତ୍ ଦୁହେଁ ବାଘମାମୁଁ ହାତରେ ପଡ଼ିଗଲେ । ମାମୁଁ କଂସହଜ ଜନ୍ତୁ ! ସେ ଦୁହିଁଙ୍କୁ ବାଟ ଓଗାଳି କହିଲା, "ମୁଁ ତୁମକୁ ଖାଇବି ।" ବିଲୁଆ ସିନା ଆଗରୁ ତା' ସ୍ତ୍ରୀ ପାଖରେ ମିଛରେ ବଡ଼ିମା ଦେଖାଇ ମୁହଁଭଙ୍ଗା ମାରୁଥିଲା, ଏବେ ଯାଏ କୁଆଡ଼େ ? କିଛି ଉପାୟ ନ ପାଇ ଖାଲି ଏପଟ ସେପଟ ହେଲା ।

ଏହା ଦେଖି ତା ସ୍ତ୍ରୀଟି ଚୁପ ହୋଇ କହିଲା, "କି ହେ, ଏତେ ଗରବ ତ ଦେଖାଉଥିଲ, ଏବେ ଗୋରୁପରି ଚଙ୍ଗ ଚଙ୍ଗ ହେଉଛ କାହିଁକି ? ହଉ, ଜଣାଗଲା ତୁମର ବଳ ।"

ଏହା କହି ମାଈ ବିଲୁଆ ଲମ୍ବ ହୋଇ ବାଘ ଗୋଡ଼ତଳେ ଶୋଇ ଗଲା । କାନ୍ଦ କାନ୍ଦ ହୋଇ କହିଲା, "ମାମୁଁ, ତୁମେ ଏ ବନସ୍ତର ରଜା, ତୁମେ ଯଦି ମୋ ଗୁହାରି ନ ଶୁଣିବ କେହି ଆଉ ଶୁଣିବ କିଏ ?"

ମାଈ ବିଲୁଆ ମୁହଁରୁ ରଜା ପଦ ଶୁଣି ବାଘର ଗ୍ରୀବ ଫୁଟେ ମୋଟ । ସେ ଗର୍ବରେ କହିଲା, "ଆଚ୍ଛା, କ'ଣ କହୁଛୁ କହ "

ଏହା ଶୁଣି ମାଈ ବିଲୁଆ ଠିଆହୋଇ କହିଲା, "ମହାରାଜ, ଆମର ଦୁଇଟି ପୁଅ ହୋଇଛନ୍ତି। ମୁଁ ଜନମ କଲି, ଆଉ ଏ କହୁଛି ଛୁଆ ଦୁଇଟା ତାର, ମତେ ଦେବ ନାହିଁ । ମହାରାଜ ଯଦି ଏ କଥା ନ ବୁଝିବେ, ତେବେ ଆପଣଙ୍କ ଆଗରେ ମୁଣ୍ଡ ପିଟି ମରିବ ।"



ବାରମ୍ବାର ମହାରାଜ ଉପାଧି ଶୁଣିବାରୁ ବାଘର ମନ ଅହଙ୍କାର ଫୁଲିଗଲା । ପୁଣି ଛୁଆ ଦୁଇଟିଙ୍କର କଥା ଶୁଣି ତା ପାଟିରୁ ଲାଳ ଗଡ଼ିଲା । କିପରି ସେ ଛୁଆ ଦୁଇଟିଙ୍କର କଅଁଳିଆ ମାଂସ ଖାଇବ, ସେହି ସ୍ୱପ୍ନରେ ଭାବିବାକୁ ଲାଗିଲା । କିଛିକ୍ଷଣ ପରେ କହିଲା, "ତୁମ ଛୁଆ ଦୁଇଟି କାହାନ୍ତି ? ମତେ ଦେଖାଅ ।"

ମାଈ ବଲୁଆକୁ ବେଶ୍ ସୁଯୋଗ ମିଳିଗଲା । ସେ ବଲୁଆକୁ ଆଗରେ ଯିବାକୁ ଆଖି ଠାରିଦେଇ, ନିଜେ ଗୃଲି କହିଲା, "ମହାରାଜ, ଆମ ପଛେ ପଛେ ଆସନ୍ତୁ, ଆଗରେ ଆମ ଗାତ ।" ବଲୁଆ ଦୁହେଁ ଆଗରେ ଗୃଲିଲେ । ବାଘ ମଧ ପଛେ ପଛେ ଗଲା ।

ଗାତ ପାଖରେ ପହଞ୍ଚି ମାଈ ବଲୁଆ କହିଲା, "ମହାରାଜ, ଟିକିଏ ଅପେକ୍ଷା କରନ୍ତୁ, ଆମେ ଛୁଆଙ୍କୁ ଗାତ ଭିତରୁ ନେଇଆସୁଛୁ ।" ଏହା କହି ସେ ଗାତ ଭିତରେ ପଶିଗଲା । ବଲୁଆ ମଧ ତା' ପଛେ ପଛେ ଗାତ ଭିତରକୁ ପଳେଇଲା ।

ବାଘଟା ତ ମୋଟାବୁଦ୍ଧିଆ । ସେ ମାଈ ବଲୁଆର ଗୃଲକ ବୁଝିପାରିଲା ନାହିଁ । ମାଈ ବଲୁଆ ଗାତ ଭିତରେ ପଶିଯାଇ ଦୋଠା ଦୋ ହସି ଉଠିଲା । ବଲୁଆ ମଧ ସେହି ହସରେ ଯୋଗଦେଲା । ସେ ତା' ସ୍ତ୍ରୀର ବୁଦ୍ଧିକୁ ଖୁବ୍ ପ୍ରଶଂସା କଲା ।

ମାଈ ବଲୁଆ ଗାତ ଭିତରେ ଥାଇ କହିଲା, "ମହାରାଜ, ଆମେ ଏବେ ଘରେ ଘରେ କଳିର ମୀମାଂସା କରି ନେଲୁଣି । ଆପଣଙ୍କ ବିଗୃର ଆଉ ଦରକାର ନାହିଁ । ବର୍ତ୍ତମାନ ଫେରିଯାଆନ୍ତୁ ।

ଏହା ଶୁଣି ବାଘରଜାର ବୁଦ୍ଧି ଗୁଡ୍ରୁମ୍ । ସେ ବିଗୃରା ଆଉ କ'ଣ କରିବ ?

ପ୍ରଶ୍ନ—୧ । ବଲୁଆ ପ୍ରଥମେ କଣ କହି ତା' ସ୍ତ୍ରୀକୁ ଅବାକ୍ କରି ଦେଇଥିଲା ?

୨ । ବାଘକୁ ମାଈ ବଲୁଆ କିପରି ବୋକା ବନାଇଲା ?

୩ । ପ୍ରଶଂସା, ଗର୍ବ, ବୁଦ୍ଧି, ବଡ଼ିମା, ସୁଯୋଗ, ମୀମାଂସା ଏଗୁଡ଼ିକୁ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼ ।

---




ରାତି ନ ପାହୁଣୁ  କାଉ ନ ଡାକୁଣୁ
ସବୁରି ଦୁଆରେ ଚହଳ
ବାସୀ ଶେଯୁ ଉଠି  ବାଳଆ ପାଇଟି
ବୋହୂଏ ସାରଲେ ସହଳ ।

ସବୁ ଚାଳ ଫୁଟି  ଧୂଆଁ ଖେଳେ ଉଠି
ବସିଛୁ ଏଣୁର ଚହଳ
ଠକ ଠକ ହୋଇ  ଘିଅ ଫୁଟୁଅଛି
ମହକାଇ ଘର ଗୋହିରୀ ।

ଏ ଚାଳ ସେ ଚାଳ  ହୋଇଣ ବ୍ୟାକୁଳ
ଡେଇଁ ଡେଇଁ ବୁଲେ ବାୟସ
ପାଇଲେ ସୁବିଧା  ଚଳେ ଆସି ସିଧା
ପିଠା ଖୁମ୍ପେ କରି ସାହସ ।

କୁକୁର ଗୁଡ଼ାକ  ଏ ପାଖ ସେ ପାଖ
ଭୁକ ବୁଲୁଥାନ୍ତି ଉହାଟେ
କେବେ କୁନ ପିଲେ  ପିଠା ଫୋପାଡ଼ିଲେ
ଗିଳିଦଅନ୍ତି ସେ ଝଟକେ ।

ଧୋବ ନାଲି ନେଳ        କେତେ ଭଳି ଭଳି
                    ପିନ୍ଧିବେ ପୋଷାକ ପିନ୍ଧଣ,
ଗୁରୁଜନ ପଦେ        ନମନ୍ତି ଆନନ୍ଦେ
                    କପାଳେ ଲଗାଇଁ ଚନ୍ଦନ ।
କଏ ଧାଇଁ ଧାଇଁ        ଉଦ୍ୟାନ୍ତେ ଅନାଇ
                    କହୁଥାଏ ମାମୁଁ ଆସିବେ
ଜର୍ମନିଆ ଲୁଗା        ପୁଣି ରଙ୍ଗ ଜୋତା
                    ଦାମିକାି ଦେଖି ସେ ଆଣିବେ ।
କହେ କଏ ହସି        ମୋ ଭାଇ ବିଦେଶୀ
                    ଛୁଟି ହୋଇଅଛୁ ଆସିବେ
ଆଖିକୁ ଚଷମା        ପୂରା ପାଇଜାମା
                    ଘୋଡା ଘଡ଼ି ମୋର ଆଣିବେ ।
ଭାଗବତ ଘର        ହୁଅଇ ମୁଖର
                    ବରଗଛ ମୂଳେ ବାଗୁଡ଼ି
ଆମ୍ବ ଡାଳେ ଦୋଳି        ପାଞ୍ଚ ସାତ ମିଳି
                    ଲଗାଇ ଦଅନ୍ତି ଧାଉଡ଼ି ।
ଆଷାଢ଼ ଆସଇ        ବାଦଲ ଭାସଇ
                    ଝମି ଝମି ଆସେ ଚପଳ
ଡାକେ ମାଟି-ମାଆ        ନୋହି ଅଲଗୁଆ
                    ହରଷେ ଭୁଣରେ ବଦନ ।

ପ୍ରଶ୍ନ—୧ । ରଜ ପରବ ବିଷୟରେ ଗୋଟିଏ ରଚନା ଲେଖ ।

୨ । ବାଦଲ, ଉଦ୍ୟାନ, ବଦନ, ବାୟୁସ, ମୁଖର, ଧାଉଡ଼ି, ଗୋଷ୍ଠୀ, ବ୍ୟାକୁଳ—ଏହି ଶବ୍ଦଗୁଡ଼ିକର ଅର୍ଥ କହ ।

# ଭାଗ୍ୟ

ଦିନେ ଗୋଟିଏ କୁକୁର ରାସ୍ତାରେ ବୁଲୁଥିବା ସମୟରେ ଗୋଟିଏ ବିରାଡ଼ିକୁ ଗଛ ଛାଇ ତଳେ ବସିଥିବାର ଦେଖିଲା । ତାକୁ ଦେଖି ସେ ମନେ ମନେ ଭାବିଲା—ଏହି ବିରାଡ଼ିଟି ଆନନ୍ଦରେ ଏଠାରେ ବସିଛି, ଆଉ ମୁଁ କେବଳ ଖାଦ୍ୟର ବୁଲୁଛି । ଭାରି ଭାଗ୍ୟବାନ୍ ଏହି ବିରାଡ଼ିଟି ।

ଏହା ଭାବି ଦୁଃଖରେ କୁକୁରଟି ଗୋଟିଏ ପୋଖରୀ ନିକଟରେ ଯାଇ ପହଞ୍ଚିଲା । ସେତେବେଳେ ପୋଖରୀର ମାଛଗୁଡ଼ିକ ମଝିରେ ଏଣେ ତେଣେ ପହଁରିବାରେ ଲାଗିଥାନ୍ତି । ପାଣିରେ ମାଛମାନେ ଆନନ୍ଦରେ ପହଁରୁଥିବା ଦେଖି କୁକୁର ମନେ ମନେ ପୁଣି ଭାବିଲା, ଏଇ ମାଛଗୁଡ଼ିକ ମୋ ଅପେକ୍ଷା ବହୁ ଗୁଣରେ ସୁଖୀ । ମୋ ପ୍ରତି ଭଗବାନ ଅତି ଅନ୍ୟାୟ କରିଛନ୍ତି । ଏମିତି ଭାବି ଭାବି କୁକୁରଟି ନିକଟରେ ଥିବା ଗୋଟିଏ ପିଜୁଳି ଗଛ ତଳେ ଶୋଇଲା ।

କିଛିକ୍ଷଣ ପରେ ସେ ଗୋଟିଏ ମାଛର ସ୍ୱର ଶୁଣିଲା । ମାଛଟିଏ କହୁଥାଏ—

"ଏହି ପୋଖରୀର ଯେଉଁ ଦିଗକୁ ଗଲେ ଖାଲି ପାଣି । ସବୁବେଳେ ଏହି ପାଣି ଭିତରେ ରହି ରହି ମୋତେ ବଡ଼ ବିରକ୍ତ ଲାଗିଲାଣି । ଏଇ କୁକୁରଟିର ଭାଗ୍ୟ ଅତି ଭଲ । ଅତି ଖୁସିରେ ଗଛ ମୂଳେ ଶୋଇପଡ଼ିଛି । କେଉଟମାନଙ୍କଦ୍ୱାରା ଧରାହେବା ଭୟ ତାର ନାହିଁ । ଯଦି ମୁଁ କେବେ ପାଣିରୁ ବାହାରକୁ ଯାଇପାରନ୍ତି, ତେବେ ଭଲ ହୁଅନ୍ତା ।"

ମାଛ ଆଉ ଅଧିକ କିଛି କହିପାରିଲା ନାହିଁ । କୁକୁର ମାଛଟିର କଥା ଶୁଣି ବଡ଼ ଆଶ୍ଚର୍ଯ୍ୟ ହେଲା । ଆଉ ନ ଶୋଇ

ସେହିକ୍ଷଣି ଉଠି ଛିଡ଼ା ହେଲା । ତାପରେ ସେ ସେଠାରୁ ଘରଆଡ଼କୁ ଗୋଟିଏ ଗୋଟିଏ ଚାଲିଲା ।

ଘରକୁ ଫେରିବା ରାସ୍ତାରେ କୁକୁରଟି ଦେଖିଲା ଯେ, ଗୋଟିଏ ଗଛ ଡାଳରେ ପକ୍ଷୀଟିଏ ବସି ଈଶ୍ୱରଙ୍କୁ ପ୍ରାର୍ଥନା କରି କହୁଛି, "ହେ ଭଗବାନ !, ନୀଳଆ ଆକାଶ ତଳେ ଉଡ଼ି ବୁଲିବାଠାରୁ କୁକୁରରୂପେ ଭୂମି ଉପରେ ଚାଲିବା ଖୁବ୍ ଭଲ । ତୁମେ ମୋତେ କେବଳ ଏହି ନୀଳ ଆକାଶ ତଳେ ଉଡ଼ିବା ଓ ଗଛ ଡାଳରେ



ବସିବାପାଇଁ ଆଦେଶ ଦେଇଅଛ । ଯେବେ ମୁଁ ତୁମର ଏହି ଆଦେଶ ଅମାନ୍ୟ କରିବି, ତେବେ ପିଞ୍ଜରାରେ ବନ୍ଦହୋଇ ରହିବି, ନଚେତ୍ ଶିକାରୀଦ୍ୱାରା ଧରାହୋଇ ମରିବି । ପ୍ରତିଦିନ ନିଜପାଇଁ କେତେ କଷ୍ଟରେ ମୋତେ ଖାଦ୍ୟ ଯୋଗାଡ଼ କରିବାକୁ ପଡ଼ୁଛି । ରହିବାପାଇଁ ବସା ନିଜେ ତିଆରି ନ କଲେ ଚଳେ ନାହିଁ । କୁଆମାନଙ୍କ ଆହାର

ଯୋଗାଇବାକୁ ମୁଁ ବାଧ୍ୟ ହେଉଛି। ଏ କୁକୁରଟିର କିନ୍ତୁ ଆହାରପାଇଁ ବ୍ୟସ୍ତ ହେବା ଦରକାର ପଡ଼ୁ ନାହିଁ। ତା ମାଲିକର ବସା ହିଁ ତାର ନିଜଦର। ତାକୁ ଖାଦିବା ଗୋଟିଏ ସୁନ୍ଦର ବାସନରେ ମାଂସଭାତ ଖାଇବାକୁ ଦିଏ ଓ ତାର ଛୁଆମାନେ ମଧ୍ୟ ଦୁଧ ପିଇବାକୁ ପାଆନ୍ତି। ପ୍ରକୃତରେ ଏହି କୁକୁରଟିର ଭାଗ୍ୟଠାରୁ ମୋର ଭାଗ୍ୟ ଅତି ହୀନ।"

ଏହା ଶୁଣିବା ପରେ କୁକୁରଟି ସେହି ସ୍ଥାନରେ ଆଉ ନରହି ଆଗକୁ ବୁଲିବାକୁ ଲାଗିଲା। ସେ ଏଥର ବିରାଡ଼ି ବସିଥିବା ଏକ ଗଛ ମୂଳରେ ପହଞ୍ଚିଲା। କୁକୁରକୁ ଦେଖିବାମାତ୍ରେ ବିରାଡ଼ିଟି କହି-ଉଠିଲା—"ଦେଖ! କୁକୁରଟି କପରି ଡଳ ଡଳ ଆସୁଛି। ତାର ଭାଗ୍ୟ ବଡ଼ ତେଜ। ସେ ଠିକ୍ ସମୟରେ ଖାଇବାକୁ ନିଜ ମାଲିକ-ଠାରୁ ପାଉଛି, ପୁଣି ପାଖ ପଡ଼ୋଶୀମାନେ ମଧ୍ୟ ବେଳେ ବେଳେ ଖାଇବାକୁ ଦିଅନ୍ତି। ସେ ଯେଉଁଆଡ଼େ ବୁଲିବାକୁ ଇଚ୍ଛା କରେ, ସେହିଆଡ଼େ ନିର୍ଭୟରେ ବୁଲିଆସେ। ତାକୁ କେହି ବାଧା ଦିଅନ୍ତି ନାହିଁ। ଯଦି ମୁଁ ରାସ୍ତାରେ ତା'ପରି ବୁଲି ବାହାରେ ତେବେ ବୁଲା କୁକୁରଗୁଡ଼ିକ ମୋତେ କାମୁଡ଼ି ଗୋଡ଼ାନ୍ତି। ଯେତେବେଳେ ମୁଁ ଆହାର ଖୋଜି ବୁଲେ; ସେମାନେ ସେତିକିବେଳେ ମୋ ପଛେ ପଛେ ଆସି ବ୍ୟସ୍ତ କରନ୍ତି। ମୁଁ ମୂଷା ମାରି ଲୋକମାନଙ୍କର ବହୁତ ଉପାକର କରେ; କିନ୍ତୁ ଏହି ଉପକାର ବଦଳରେ ମୋତେ ସେମାନେ କଣ ଦିଅନ୍ତି ?"

କୁକୁରଟି ଆଉ କିଛି ଶୁଣିବାପାଇଁ ସେଠାରେ ରହିଲା ନାହିଁ। ଧୀରେ ଧୀରେ ଘରଆଡ଼କୁ ଯିବାକୁ ଲାଗିଲା ଏବଂ ମନେ ମନେ ଅନୁତାପ କଲା।

—ମୁଁ ବୃଥାରେ ଭଗବାନଙ୍କ ଉପରେ ରାଗୁଥିଲି ଓ ଭାଗ୍ୟକୁ ନିନ୍ଦା କରୁଥିଲି। ଭାବିଥିଲି, କେବଳ ମୋ ଛଡ଼ା ଏହି ସଂସାରରେ

ସମସ୍ତେ ସୁଖୀ । ଏବେ ଆଜି ଦେଖିଲି—ଏଇ ବଗୁଲି, ମାଛି' ଆଉ ପକ୍ଷୀ ସମସ୍ତେ ନିଜ କପାଳକୁ ନିନ୍ଦା କରିବାରେ ଲାଗିଛନ୍ତି । ପ୍ରକୃତିରେ ପ୍ରତ୍ୟେକେ ନିଜ ନିଜ କାମଧନ୍ଦାରେ ସନ୍ତୁଷ୍ଟ ରହିବା ଉଚିତ୍ । ମୁଁ ଏଣିକି ଆଉ ଭାଗ୍ୟକୁ ନିନ୍ଦା କରିବି ନାହିଁ ।

ସେହିଦିନଠାରୁ କୁକୁର ଆଉ ନିଜ ଭାଗ୍ୟ ବିରୋଧରେ ଭଗବାନଙ୍କୁ ଦୋଷ ଦେଲା ନାହିଁ ।

ପ୍ରଶ୍ନ—୧ । ମାଛି କାହିଁକି ମନ ଦୁଃଖ କରୁଥିଲା ?
୨ । ବଗୁଲି କଣ ଭାବି କୁକୁରକୁ ସୁଖୀ ବୋଲି କହିଲା ?
୩ । କୁକୁର କପରି ନିଜର ଭୁଲ ବୁଝିପାରିଲା ?



## କୁନିର ସ୍ୱପ୍ନ

ମାଆ କୋଳେ ଶୋଇ ରହି କୁନି ଗୁଡ଼ି ଘୁଙ୍ଗୁଡ଼ି,
ଚଉପାଶେ ଘୋଟିଆସେ ସପନର କୁହୁଡ଼ି—
ଆକାଶରେ ସନ୍ ସନ୍ ସମୀରଣ ବହିଲା,
ସପନରେ କୁନି ଦେହେ ସୁନାପର ଲାଗିଲା ।
କନ୍ କନ୍ ହେଲା ମନ କୁନିର,
ଡେଇଁଗଲା ପାଟ ବେଣା
ପରବତ ବଣ ବିଲ ଗହ୍ୱର ।
ଭସି ଭସି ଯାଉ ଯାଉ ସୁଉ ସୁଉ ପବନେ,
ମେଘ ସହ ମିଶିଗଲା ଆମ କୁନି ଗଗନେ ।

ବଉଦ ଭେଳାରେ ବସି
କୁନ ଉଡ଼େ ଆକାଶେ
ଡର ନାହିଁ ବତାସେ
ସୁନା ପର ଲାଗି କୁନ ପଗ୍‌ଟିଏ ଅବା ସେ !



କୁନ ଦେହେ ସୁନା ପର ଲାଗିଛି,
ସେ କ ଆଉ କାହା କଥା ମାନୁଛି.
ଅମାନିଆ ହୋଇ ଉଚ୍ଚ ଆକାଶରେ ଉଡ଼ୁଛି ।

ସୁଉ ସୁଉ ଗରଜନ ବହୁଅଛି ବତାସ,
ଘଡ଼ିକ ଭିତରେ ଫାଟି ପଡ଼ିବ କ ଆକାଶ ।
କୁନ ସହ ବଉଦକୁ ବାଆ ନେଲା ଉଡ଼େଇ
ହିମାଳୟ ପରବତେ ବେଗେ ଦେଲା ବାଡ଼େଇ ।

ନିମିଷକେ ବଉଦର ଢେଲା ଗୋଟି ଭାଙ୍ଗିଲା
ଝର ଝର ହୋଇ ପାଣି ବରଷା ଯେ ପଡ଼ିଲା ।
ପଡ଼ିଗଲା କୁନ ତଳେ—ଛୁଡ଼କ,
ସପନ ତା' ନାହିଁ ତଳେ କୁନ ଆମ ମାଆ କୋଳେ,
ଶୋଇଅଛୁ ଆଣ୍ଡ କରି ପିଠିକ ।
ବାହାରେ ବର୍ଷେ ମେଘ
ଟିପି ଟିପି ଝପର
ବାଡ଼ି କୂଅ କୋରଡ଼ରେ ଗୁଡ଼ୁଅଛୁ ରଡ଼ ବେଙ୍ଗ
କେଁ-କେଁ-କେଁ-କେଁ-କଟର ।

ପ୍ରଶ୍ନ—୧ । କୁନ ସପନରେ କଣ ଦେଖିଲା ?
୨ । ପ୍ରକୃତରେ ସେତେବେଳେ ବାହାରେ କଣ ହେଉଥିଲା ?



## ଅଶୋକ ଶିଖିଲା

ଅଶୋକ କାହାରି ଉପରେ ରାଗେ ନାହିଁ । କେହି ତା ଉପରେ ରାଗିଲେ ସେ ନିଜକୁ ଦୋଷୀ ମନେକରି କାନ୍ଦପକାଏ । ପରର ଦୁଃଖ ଦେଖିଲେ ତାକୁ ବଡ଼ ବାଧେ । ତା'ଠାରୁ କେହି ସାହାଯ୍ୟ ଚାହିଁଲେ ସେ ନିଜ ହାତଖର୍ଚ୍ଚ ପାଇଁ ଘରୁ ଆଣିଥିବା ପଇସାରୁ ସାଙ୍ଗେ ସାଙ୍ଗେ କିଛି ଦେଇଦିଏ । ବେଳେ ବେଳେ ସେ ବାପାଙ୍କଠାରୁ ମଧ୍ୟ ମାଗି ଆଣି ଦେଇଥାଏ । ତା' ବାପା ପୁଅର ଏପରି ଭଲ କଥା ଶୁଣି ଭାରି ଖୁସି । କେବଳ ଏହି ଗୁଣଟି ପାଇଁ ପଇସା ମାଗିଲେ ବାପା ତାକୁ ମନା କରନ୍ତି ନାହିଁ । ଅଶୋକକୁ ତା' ସାଙ୍ଗ ପିଲାମାନେ ଅତି ଭଲ ପାଆନ୍ତି ।

ଅଶୋକ ପାଠପଢ଼ାରେ କେବେ ହେଳା କରେ ନାହିଁ । ଯେ ଶ୍ରେଣୀରେ ଦ୍ୱିତୀୟ ହୁଏ । ଏଣୁ ଶିକ୍ଷକମାନେ ମଧ୍ୟ ତାକୁ ବଡ଼ ଆଦର କରନ୍ତି ।

ଅଭିରାମ ଅଶୋକର ସହପାଠୀ । ଶ୍ରେଣୀରେ ପାଠପଢ଼ାରେ ତାକୁ କେହି ହଟିପାରନ୍ତି ନାହିଁ । ଏଥିଛଡ଼ା ତାର ଆଉ ଗୋଟିଏ ଭଲ ଗୁଣ ଥାଏ । କାହାର ମନରେ ଦୁଃଖ ନ ଦେବା ତାର ମତ । ସେଥିପାଇଁ ବନ୍ଧୁ ମହଲରେ ତା'ର ଯଥେଷ୍ଟ ଖ୍ୟାତି । ଘରେ ବା ବାହାରେ କେହି ତାକୁ ପାଠ ପଚାରିବାକୁ ଆସିଲେ ସେ କାହାକୁ ନିରାଶ କରି ଫେରାଇ ଦିଏ ନାହିଁ ।

ସାଧାରଣତଃ ତା'ର ସହପାଠୀଙ୍କର ସଂଖ୍ୟା ଅଧିକ ହୋଇଥିବାରୁ ସେ ସେମାନଙ୍କୁ ପାଠ ବୁଝାଇ ବୁଝାଇ ପାଠତକ ତାର ଘୋଷା ହୋଇଯାଏ । ଏଥିପାଇଁ ତା ବାପା ବଡ଼ ବ୍ୟସ୍ତ ହୋଇଭାବନ୍ତି, ପୁଅ ଅନ୍ୟ ପିଲାମାନଙ୍କୁ ପାଠ ବତାଇଦେଇ ନିଜର ସମୟ ନଷ୍ଟ କରୁଛି । ହେଲେ ବର୍ଷ ଶେଷରେ ପୁଅର ପରୀକ୍ଷା ଫଳ ଦେଖି ବାପା ଆଶ୍ଚର୍ଯ୍ୟ ହୁଅନ୍ତି । ଅଭି ଶ୍ରେଣୀରେ ପ୍ରଥମ ହୁଏ ।

ନାଗୁ ସେମାନଙ୍କର ଗୋଟିଏ ସାଥୀ ପିଲା । ତା'ର କେହି ନ ଥିଲେ । ଗରିବ ହେଲେ ମଧ୍ୟ ପାଠପଢ଼ାରେ ତା'ର ମନ ଊଣା ହୁଏନି । ସେଥିପାଇଁ ସେ ମାଗିଯାଚି ଯାହା ପାଏ ସେଇଥିରେ ଖାଇପିଇ ପାଠ ପଢ଼େ । ତେବେ ଅଶୋକ ସଙ୍ଗେ ଦେଖାହେବା ଦିନଠାରୁ ତାର ଅସୁବିଧା କେତେକ ପରିମାଣରେ କମିଯାଇଛି ।

ଦିନେ ଅଭି ଅଶୋକକୁ ଫୁଟବଲ ଖେଳ ଦେଖିବାପାଇଁ କିଛି ପଇସା ମାଗିଥାଏ । ସେତିକିବେଳେ ନାଗୁ ମଧ୍ୟ ଅଶୋକକୁ କାଗଜ କିଣିବ ବୋଲି କିଛି ପଇସା ମାଗିଲା । ଅଶୋକ ପାଖରେ କମ୍ ପଇସା ଥାଏ ।

ଅଶୋକ କାହାକୁ ଦେଇ କାହାକୁ ନାହିଁ କରିବ । ଜଣେ ନିଃସହାୟ ନାଗୁ, ତାଛଡ଼ା ତା'ର ଆଗ୍ରହ । ଆଉ ଅନ୍ୟ ଜଣେ ତା'ର ପ୍ରିୟତମ ବନ୍ଧୁ ଅଭି । ଅଶୋକ ବନ୍ଧୁ ଟିନ୍ନୀକର ଚେଷ୍ଟରେ ନାଗୁର ଅନୁରୋଧକୁ ଅଧିକ ଜରୁରୀ ମନେକରି ତାଙ୍କୁ ପଇସା ସାହାଯ୍ୟ ଦେଲେ ଏବଂ ଅଭିକୁ ଉପେକ୍ଷା କରିଦେଲେ ।

ଏକଥା ଅଭି ପାଖରେ ଅଛପା ରହିଲ ନାହିଁ । ତେଣୁ ସେ ଦିନ ଅଶୋକ ସହିତ ଅଭି କଥାବାର୍ତ୍ତା କଲା ନାହିଁ; ଦେଖିଲେ ମୁହଁ ବୁଲାଇ ଚାଲିଗଲା । ଅଭିର ଏପରି ବ୍ୟବହାର ଦେଖି ଅଶୋକ ମନରେ ଭାରି ଦୁଃଖ ହେଲା ।



ଅଶୋକ ଜଣେ ଗରିବକୁ ସାହାଯ୍ୟ କରି ଦୋଷ କରି ନାହିଁ, ବରଂ ଭଲ କରିଛି । ଏଥିରେ ଅଭିର ତା ଉପରେ ରାଗିବାର କୌଣସି କାରଣ ନାହିଁ । ତେଣୁ ଅଭିର ଅଶୋକ ପ୍ରତି ଏପରି ବ୍ୟବହାର

ଅନ୍ୟସବୁ ସାଥୀମାନଙ୍କୁ ବଡ଼ ଖରାପ ଲାଗିଲା । ସେମାନେ ତାକୁ ଘୃଣା କରିବାକୁ ଲାଗିଲେ । କେହି ଅଭି ସହିତ କଥା ଭାଷା କଲେ ନାହିଁ ବା କେହି ତା ପାଖକୁ ପାଠ ବୁଝିବାକୁ ଗଲେ ନାହିଁ ।

ସମସ୍ତେ ଅଭିଠାରୁ ଦୂରେଇ ରହିବାରୁ ଅଭିକୁ କିଛି ଭଲ ଲାଗିଲା ନାହିଁ । ସେ ଦିନେ ରାତିରେ ଶୋଇବା ପୂର୍ବରୁ କଥାଟିକୁ ଥରେ ଭଲ କରି ଭାବିଗଲା । ସକାଳୁ ଉଠି ମା'ଙ୍କୁ ସବୁକଥା କହି ପଚାରିଲା—"ଏଥିରେ ଦୋଷ କାହାର ।"

ମା' ସବୁକଥା ଶୁଣି ପୁଅକୁ ତା'ର ଭୁଲ ବୋଲି ବୁଝାଇଦେଲେ ।

ଅଭି ସବୁ ବୁଝିସାରି ଅଶୋକ ପାଖକୁ ଦୌଡ଼ିଗଲା ଏବଂ ତାକୁ କହିଲା, "ଅଶୋକ, ପ୍ରକୃତରେ ତୁମ ସହିତ କଥା ନ କହି ମୁଁ ବଡ଼ ଭୁଲ କରିଛି । ତୁମେ କ'ଣ ମୋତେ କ୍ଷମା କରିବ ନାହିଁ ?"

ଅଶୋକ ତାକୁ କହିଲା, "ତୁମେ ମୋ ସହିତ କଥାବାର୍ତ୍ତା କରୁ ନ ଥିବାରୁ ମୋ ମନରେ ଭୀଷଣ କଷ୍ଟ ହୋଇଛି । ବର୍ତ୍ତମାନ ତୁମେ ଯେତେବେଳେ ନିଜର ଭୁଲ ବୁଝିପାରିଲଣି, ସେତେବେଳେ ମୋ ମନରେ ଆଉ କୌଣସି ଦୁଃଖ ନାହିଁ । ତେବେ ତୁମକୁ ମୋର କଥାଟିଏ ମାନିବାକୁ ପଡ଼ିବ ।

"ତୁମେ ଆଜିଠାରୁ ଭଲମନ୍ଦ ଚିନ୍ତା ନ କରି କୌଣସି କାମ କରିବ ନାହିଁ ।"

ପ୍ରଶ୍ନ—୧ । ଅଭିକୁ ସମସ୍ତେ କାହିଁକି ଭଲ ପାଉଥିଲେ ? ପରେ ତାକୁ କାହିଁକି ଘୃଣା କଲେ ?

୨ । ଅଶୋକ ଅଭିକୁ କେଉଁ କଥାଟି ମାନିବାକୁ କହିଲା ?




ଗୁଡ଼ି ରେ ଗୁଡ଼ି ଯାଆ ତୁ ଉଡ଼ି
ସରଗପୁରେ ଯହିଁ,
ଆକାଶ କୋଳେ ମେଘର ଘରେ
ବିଜୁଳି ନାଚି ରହି—
ଶୁଖାଏ ତାର ନାଲି ପଣତ
ଜଗତସାରା ଚମକାଏ ତ
କ୍ଷଣକେ ଦେଇ ଦେଖାଏ ତ ପୁଣି
କ୍ଷଣକେ ଯାଏ ଲୁଚି,
ଯାଆ ମୋ ଗୁଡ଼ି ସେଠାକୁ ଉଡ଼ି
ଖେଳିବୁ ବସି ପୁଚି ।
ମଥାରେ ବାନ୍ଧି ରୁପେଲି ଫିତା
ଯାଇବୁ ଯେବେ ଆକାଶ ପଥା
କହିବୁ ଆମ ଦୁନିଆ କଥା
ସରଗପୁରେ ଯାଇ,
ଫେରିବୁ ଯେବେ ଗାଆଁକୁ ପୁଣି
କହିବୁ ସେଠା ଖବର ଆଣି
ଅମରପୁର କାହାଣୀ ଶୁଣି
ପଡ଼ିବି ଧୀରେ ଶୋଇ ।

କହିବୁ ମୋତେ କହିବୁ ଆସି
କପର ଯେଉଁଠି ପୂର୍ଣ୍ଣ ଶଶୀ
ସକାଳେ ସଞ୍ଜେ ନଇତ ହସି
ଖେଳନ୍ତି ଲୁଚକାଳି,
କପର ପୁଣି ଚଅଁର ଗୃଳ
ଅଇରାବତ ଆସଇ ଚଳି
କୁଆଁ ଣ୍ଟୁ ତାରା ଜାଗର ଜାଳି
ମାରନ୍ତି ବସି ତାଳି ।
ବରୁଣ ରଜା କପର ତହିଁ
ବରଷା ବାରି ଝରାଇ ଦେଇ
ଆମର ଗାଆଁ ବିଲର ବୁକେ
ଫଳାଇଦିଏ ଧାନ,
କହିବୁ ଯେବେ କହିବୁ ତୁହି
ହରଷ ମନେ ହୋଇ ମୁଁ ବାଇ
ଉଡ଼ାଇ ଦେବି ଅସରା ପଥେ
ଉଡ଼ିବୁ ଚିର ଦିନ ।

ପ୍ରଶ୍ନ—୧ । ଆକାଶରୁ ଗୁଡ଼ି ଫେରିଆସି ପିଲାଟିକୁ କଣ କହିବ ?

୨ । ଏ ଗୀତଟିକୁ ସବୁପିଲା ମିଶି ଏକ ସ୍ୱରରେ ବୋଲ ।

୩ । ଅମରପୁର କାହାଣୀ, ଚଅଁର ଗୃଳ, ଜାଗର ଜାଳି
ଆକାଶକୋଳ, ଜଗତସାରା, ଅସରାପଥ—
ଏଗୁଡ଼ିକୁ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଢ଼ ।

# ବାପୁଜୀ ଓ ଯଦୁଆ ଭିକାରୀ

ସତ୍ୟଭାମାପୁରଠାରେ ଯଦୁଆ ନାଆଁରେ ଗୋଟିଏ ଭିକାରୀ ଥାଏ । ତାର ପୁଅ ଝିଅ କେହି ନଥିଲେ । ବଳ ବୟସ ଥିଲାବେଳେ ସେ କାମ କରି ପେଟ ପୋଷୁଥିଲା । ବୁଢ଼ା ହେବାରୁ ଆଉ କାମଦାମକୁ ପାରିଲା ନାହିଁ । ଶେଷରେ ଗାଁକୁ ଗାଁ ଯାଇ ଭିକ ମାଗିଲା । ଯାହା-ପାଇଲା, ସେଇଥିରେ ସେ ଚଳିଲା । ଖଣ୍ଡିଏ ସାତସିଆଁ ମଇଳା ଲୁଗା ପିନ୍ଧି ସେ ଯିବା ଆସିବା କଲା ।

ପ୍ରତିଦିନ ରାତି ପାହିଲେ ଯଦୁଆ ବାଡ଼ି ଖଣ୍ଡିଏ ଧରି ବାହାରି ପଡ଼େ । କି ଖରା, କି ଶୀତ, କି ବର୍ଷା ସବୁଦିନେ ସେ ପରଦୁଆରେ ଠିଆ ହୁଏ । ସମସ୍ତଙ୍କଠାରୁ ବହୁତ ଗାଳି ଖାଏ । ଦୁଷ୍ଟପିଲେ ତାକୁ ଢେଲା ଫୋପାଡ଼ନ୍ତି, କିନ୍ତୁ ଯଦୁ ବିଚରା ସବୁ ସହିଯାଏ ।

ସେହି ସମୟରେ ବାପୁଜୀ ଉତ୍କଳର ନୀଳାଚଳଧାମରୁ ପଦଯାତ୍ରା କରି ଫେରୁଥାନ୍ତି । ବାଟରେ ତାଙ୍କୁ ଦେଖିବା ପାଇଁ ବହୁଲୋକ ଦୂର-ଦୂରାନ୍ତରୁ ଚୂଡ଼ା ଗୁଡ଼ଳ ବାନ୍ଧି ଆସୁଥାଆନ୍ତି । ସେଥିପାଇଁ ଜଗନ୍ନାଥ ସଡ଼କରେ ଭରି ଭିଡ଼ ହୋଇଥାଏ ।

ଯଦୁଆ ଶୁଣିଲା—ସତ୍ୟଭାମାପୁର ଗାଁ-ଚୌଠାରେ ବାପୁଜୀ ସଭା କରିବେ । ସେଠାରେ ହରିଜନମାନଙ୍କପାଇଁ ଚାନ୍ଦା ମାଗିବେ । ଯଦୁଆ ନିଜେ ହରିଜନ । ସେ ଏହା ଶୁଣି ଆଉ ଥୟ ହୋଇ ବସି-ପାରିଲା ନାହିଁ । ଭାବିଲା, ମୁଁ ନିଶ୍ଚୟ ସଭାକୁ ଯିବି । ବାପୁଜୀଙ୍କ ହାତରେ କିଛି ଦେବି । ତେବେ ସେ ତ ଭିକାରୀ; କଣ ବା ଅଛି ତା'ର ଯେ ଦେଇ ପାରିବ ।

ଶେଷରେ ସେ ଗାଁ ମହାଜନଙ୍କ ପାଖକୁ ଗଲା । ସେତେବେଳେ ମହାଜନେ ତାଙ୍କ ଦାଣ୍ଡ ପିଣ୍ଡାଟିରେ ବସିଥାଆନ୍ତି । ତାଙ୍କ ପାଖରେ ଗୁମାସ୍ତା ଜଣ ହିସାବ ଲେଖୁଥାନ୍ତି । ମହାଜନଙ୍କୁ ପ୍ରଣାମ କରି ଯଦୁଆ ସେଇଠି ପିଣ୍ଡା ତଳେ ଠିଆହେଲା ।

ମହାଜନ ଯଦୁଆକୁ କହିଲେ, "ମୋର ବର୍ତ୍ତମାନ କାମ ଅଛି । ତୁ ଯା, ପଛକୁ ଆସିବୁ, ଗଣ୍ଡେ ଖାଇବୁ ।"

ଯଦୁଆ ମହାଜନଙ୍କୁ କହିଲା, "ନାଇଁ ଆଜ୍ଞା, ମୁଁ ଖାଇବାକୁ ମାଗୁ ନାହିଁ । ଗୋଟିଏ କଥା ମୁଁ କହିବାକୁ ଆସିଛି । ଆପଣ ରଖିଲେ କହିବି ।" ମହାଜନ କହିଲେ, "ଏମିତି କି କଥା କହିବୁ ?"

ଯଦୁଆ ଉତ୍ତର ଦେଲା, "ଆଜ୍ଞା, ଆଜି ଆମ ଗାଁ ତୋଟାରେ ସଭା ହେବ । ବାପୁଜୀ ଆମ ହରିଜନମାନଙ୍କ ପାଇଁ ସେଠାରେ ଚାନ୍ଦା ମାଗିବେ । ମୁଁ ଭାବୁଛି, ତାଙ୍କୁ ପଇସାଟିଏ ଚାନ୍ଦା ଦେବି । ସେଥିପାଇଁ ମନରେ ବଳ ଧରି ଆପଣଙ୍କ ପାଦତଳକୁ ଧାଇଁଆସିଛି । ଆଜ୍ଞା ଜାଣିଛି ମୋର ଦରକାର ନାହିଁ । ତାଙ୍କୁ ଆଖିରେ ଦେଖିବି, ତାଙ୍କ ହାତରେ ପଇସାଟିଏ ଦେବି । ଆମର ଅଛୁଆଁ ଭାଇଙ୍କ ପାଇଁ ସେ ବଡ଼-ଠାକୁରଙ୍କଠାରୁ ଆସିଲେଣି । ସତେ କଣ ଆମ ଭାଗ୍ୟ ବଦଳିବ !"

ମହାଜନ କହିଲେ, "ତୁ ତ ଜଣେ ଭିକାରୀ, ଭିକ ମାଗି ଚଳୁଛୁ । ତୁ ପୁଣି ଦାନ କରିବୁ ! କାନରେ ଏ କଥା ଶୁଣିଲି । ପେଟକୁ ଦାନା କି ଅଣ୍ଟାକୁ କନା ନାହିଁ । ତୋ ମନରେ ପୁଣି ଜାତିଭାଇଙ୍କ ପାଇଁ ଚିନ୍ତା ?"

ଯଦୁଆ କହିଲା, "ସାହୁକାର ଆଜ୍ଞା, ମୁଁ ଆସି ବୁଢ଼ା ହେଲିଣି । ଆଉ କେତେ ଦିନ ବା ବଞ୍ଚିବି ? ନିଜ ପେଟ କଥା ତ ନିତି ଭାବୁଛି, ତା'ପାଇଁ କେତେ ବୁଲୁଛି । ଘର ଦୁଆରେ ଗୋଡ଼ ଘଷୁଛି

ଠିଆହେଉଛୁ । ଆଜ୍‌ ଦିନଟି ଗଲେ ଆଉ ତ ଆମ ଗାଁ ଚୋଟମାଳ ଭିତରେ ବାପୁଜୀଙ୍କୁ ଦେଖିବାକୁ ପାଇବା ନାହିଁ ।”

ଯଦୁଆ କଥାରେ ମହାଜନଙ୍କ ହୃଦୟରେ ଦୟା ହେଲା । ସେ ଗୁମାସ୍ତାଙ୍କୁ ପଇସାଟିଏ ଦେବାପାଇଁ ଆଦେଶ ଦେଲେ । ଯଦୁଆ ପଇସାଟିଏ ଧରି ମହାଜନଙ୍କୁ ମୁଣ୍ଡିଆଟିଏ ମାରି ଖୁସି ମନରେ ଚୋଟାକୁ ଫେରିଆସିଲା ।

ଚୋଟାରେ ହଜାର ହଜାର ଲୋକ ଜମା ହୋଇଥାନ୍ତି । ଗହଳ ଚହଳରେ ଚୋଟା ଫାଟିପଡୁଥାଏ । ଠିକ୍ ସମୟରେ ବାପୁଜୀ ଆସି ସଭାରେ ପହଞ୍ଚିଲେ । ସଭା ଆରମ୍ଭ ହେଲା ।



ବାପୁଜୀ ବକ୍ତୃତା ଦେଲେ, “ଭାଇ ଓ ଭଉଣୀମାନେ, ମୁଁ ଜଣେ ବଡ଼ ଭିକାରି । ହରିଜନମାନେ ଆମ ଭାଇଭଉଣୀ । ଆମେ ସମସ୍ତେ ଏକ ଭଗବାନଙ୍କ ସନ୍ତାନ । ଆମ ସମସ୍ତଙ୍କ ଦେହ

ଏକା ରକ୍ତ ମାଂସରେ ଗଢ଼ା । ମୁଁ ସେହିମାନଙ୍କ ପାଇଁ ଭିକ ମାଗୁଛି । ତୁମେମାନେ ମୋତେ ଭିକ ଦିଅ ।”

ବାପୁଜୀଙ୍କ କଥା ନ ସରୁଣୁ ସଭାରେ ଜମା ହୋଇଥିବା ଲୋକେ ଟଙ୍କା, ସୁନାରୂପାର ଅଳଙ୍କାର ପ୍ରଭୃତି ବାପୁଜୀଙ୍କ ହାତରେ ଅଜାଡ଼ିଦେଲେ । ସଭା ମଉଳିଲା ।

ଯଦୁଆ ଦୂରରେ ଠିଆହୋଇ ବାପୁଜୀଙ୍କୁ ଚାହିଁ ରହିଥାଏ । ପଇସାଟିକୁ ହାତରେ ଧରିଥାଏ । ବାପୁଜୀଙ୍କୁ ତାହା କିପରି ଦେବ ସେହିକଥା ଭାବୁଥାଏ ।

ବାପୁଜୀ ସଭାରୁ ଉଠି ଯାବା କରିବାରୁ ସେ ଆଗକୁ ଯାଇ ପଇସାଟିକୁ ଧରି ବାପୁଜୀଙ୍କ ଗୋଡ଼ତଳେ ପଡ଼ିଗଲା । ବାପୁଜୀ ସ୍ନେହରେ ତାକୁ ଉଠାଇଲେ । ଯଦୁଆ ତାଙ୍କ ହାତରେ ପଇସାଟିଏ ଦେଇଦେଲା ।

ବାପୁଜୀ ଯଦୁଆ କାନ୍ଧରେ ହାତ ପକାଇ କାନ୍ଦ ପକାଇଲେ । ସେ ତାକୁ କହିଲେ, “ତୁମର ଏହି ପଇସାଟି ମୋତେ ଲକ୍ଷେ ଟଙ୍କା । ତୁମର ଭଳି ସମସ୍ତଙ୍କର ମନ ହେଲେ ମୋର ଆଉ କିଛି ଅଭାବ ରହିବ ନାହିଁ ।”

ଆଜି ବାପୁଜୀ ନାହାନ୍ତି କି ଯଦୁଆ ଭିକାରୀ ନାହିଁ । କେବଳ ସେହି ସତ୍ୟଭାମାପୁରର ଛୋଟଟି ରଙ୍ଗ ପତିତପାବନ ମହାତ୍ମାଜୀଙ୍କ କଥା ମନେ ପକାଇ ଦେଉଛି ।

ପ୍ରଶ୍ନ — ୧ । ବାପୁଜୀ ସଭାରେ କଣ କହୁଥିଲେ ?

୨ । ସଭା ମଉଳିଲା, ଫାଟି ପଡ଼ୁଥାଏ, ଖୁସିମନ୍ଦରେ, ଆଖିରେ ଦେଖିବା, ପେଟକୁ ଦାନା—ଏଗୁଡ଼ିକୁ, ଲଗାଇ ଗୋଟିଏ ଗୋଟିଏ ବାକ୍ୟ ରଚନା କର ।




ଘୁଷି ବଲେ ଚୁଟିଛି ମୋର    ନ ରୁଚେ ଦୁଧଭାତ
କାଳ ଗାଈ ମୋ ନ ଖାଏ ଘାସ    ମାରଇ ଖାଲି ନାତ ।
ମାଞ୍ଜି ସ୍ୱ ଭାତ ନ ଛୁଏଁ ଆଜ    କୁକୁର ଛୁଆ ମୋର
ନେଉଳ ଛୁଆ ହେଉଛି ଖାଲି    ରାଗରେ ଜରଜର ।
ଶୁଆ ଶାରୀଏ ରାଗରେ ପୁଣି    କରିଅଛନ୍ତି ମାନ
ଶାରୀ ନ ଖାଏ ବୁଟ ଛତୁଆ    ଶୁଆ ନ ଛୁଏଁ ଧାନ ।
ଜାଣିଚ ପିଲେ, କାହିଁକି କି ଆଜ    ଲାଗିଛି ଏତେ ନାଟ
ସାନ ଭାଇ ମୋ ଚଗଲା ଭାରି    ପଢଇ ନାହିଁ ପାଠ ।
ଖେଳରେ ସଦା ଥାଏ ତା ମନ    ନାଆଁଟି ତାର "ଟୁଆଁ"
ଘଂଟାଯାକ ସକାଳୁ ଉଠି    ମାରଇ ଖାଲି ଡ଼ଆଁ ।
ପୋଷା ବଲେଇ, କୁକୁର ଗାଈ,    ନେଉଳ, ଶୁଆ, ଶାରୀ
ନ ମାନେ କଛି ପିଟଇ ତାଙ୍କୁ    ହାତରେ ବାଡ଼ି ଧରି ।
ସେଥିପାଇଁ ଆଜ ସଭିଏଁ ମିଳି    କରନ୍ତି ଅନଶନ
ନ ଶୁଭଇ ତେଣୁ ଶୁଆ ଶାରୀଙ୍କ    ମଧୁର ଗୀତ ତାନ ।
ଟୁଆଁ ର ମନେ ଭାଲେଣି ତେଣୁ    ବୁଲଇ ମନ ମାରି
ବଲେଇଟିକୁ ଆଉଁଷେ ଧୀରେ    ପଡ଼ଇ ଲୁହ ଝରି ।
କାଳ ଗାଈର ଆଉଁଷେ ପିଠି,    ନେଉଳ ଧରି କାନ୍ଦେ
୪ "ଆଉ ତୁମଙ୍କୁ ମାରିବି ନାହିଁ"    କହି କହି ସେ କାନ୍ଦେ ।

ଶୁଆ ଶାଗୁଙ୍କ ପିଞ୍ଜରା ପାଖେ,
ଝୁଅ କରନ୍ତି ଅଳି,
"ଖାଆରେ ମୋତ ସୁନା ଚଢ଼େଇ
ସବୁ ଦୋଷ ମୋ ଭୁଲି ।
ଆଉ ତୁମକୁ ମାରିବ ନାହିଁ
ହେବ ମୁଁ ଭଲ ପିଲି
ଖାଆରେ ମୋର ପଶୁପକ୍ଷୀଏ
ଅଙ୍ଗାର ଆସି ହେଲି ।"
ଶୁଣି ତା କଥା କୁକୁରଛୁଆ
ପୁଷି, ବଳେଇ, ଗାଈ
ନେଉଳଛୁଆ, ଶୁଆ, ଶାଗୁଏ
ହରଷେ ଦେଲେ ଖାଇ ।
ସେଦିନୁ ଝୁଅ ଭୁଲିବା ଗୁଣ
ପଢ଼ଇ ଭଲ ପାଠ
ପଶୁପକ୍ଷୀଙ୍କୁ ନ ମାରେ ଆଉ
ହାତରେ ଧରି ଗୁଣ୍ଠ ।

ପ୍ରଶ୍ନ—୧ । ଝୁଅ ପ୍ରଥମେ କପରି ଚଗଲାମି କରୁଥିଲା ?
୨ । ସେ ପରେ କପରି ଭଲ ପିଲି ହେଲା ?

---

## ପାଗଳା କୁକୁର

ଜଣେ ଗୋଟିଏ କୁକୁର ପୋଷିଥାଏ । ସୁନ୍ଦର ଧଳା କୁକୁରଟିଏ । ତା ଦେହରେ ଝାମ୍ପୁଲା ଧଳା ଲୁମଗୁଡ଼ିକ ଯେମିତି ସୁନ୍ଦର ସେମିତି ନରମ । ତାର ଗୋଲ ଗୋଲ ଚକା ଚକା ଆଖି ଦିଓଟି ତା ଦେହକୁ ଠିକ୍ ମାନିଥାଏ । କୁକୁରଟି ମାଲିକକୁ ଯେପରି ଭଲପାଏ, ମାଲିକ ମଧ୍ୟ କୁକୁରକୁ ସେହିପରି ସ୍ନେହ କରେ । ଖାଇ ବସିବା ପୂର୍ବରୁ ମାଲିକ ତାକୁ ଆଗ ଖାଇବାକୁ ଦିଏ । କୁକୁର ମଧ୍ୟ ଖାଇବା ସଙ୍ଗେ ସଙ୍ଗେ ନିଜର ଲାଙ୍ଗୁଳଟି ହଲାଇ ଖୁସିରେ ମାଲିକ ଆଡ଼କୁ ଆନାଇଁ ବସେ । ଏମିତି ଦିନ ଚାଲିଥାଏ ।

କିଛିଦିନ ପରେ ଲୋକଟି ଗୋଟିଏ ଧଳା କାଳିଆ ବିଲୁଆ ଆଣି ପୋଷିଲା । ବିଲୁଆଟିର କୌତୁକିଆ ଖେଳ, ସୁନ୍ଦର ଚାଲି ଓ

ମଧ୍ୟର ମିଉଁ ମିଉଁ ଶବ୍ଦରେ ମାଲିକ ମନରେ ଖୁବ୍ ଆନନ୍ଦ । ବେଳ ପାଇଲେ ସେ ବିରାଡ଼ି ସାଙ୍ଗରେ ଖେଳେ, ହାତରେ ତା'ର କଅଁଳ ଲୁମକୁ ଆଉଁଷିଦିଏ ।

ମାଲିକର ବିରାଡ଼ି ପ୍ରତି ଶ୍ରଦ୍ଧା କୁକୁରକୁ ଭଲ ଲାଗିଲା ନାହିଁ । ତା'ର ମନରେ ରାଗ ଆସିଲା । ସେ ସବୁବେଳେ ଖାଲି ବିରାଡ଼ି ଉପରେ ଗରଗର ହେଉଥାଏ ।

ଦିନେ ମାଲିକ ବିରାଡ଼ିକୁ ଆଉଁଷି ଆଉଁଷି ପଦାକୁ ଛାଡ଼ିଦେବା ପରେ ବିରାଡ଼ି ମଧ୍ୟ ଟିକିଏ ବଜାରଆଡ଼େ ବୁଲି ଆସିବ ବୋଲି ଘରୁ ବାହାରକୁ ଗଲା । କୁକୁରକୁ ସୁଯୋଗ ମିଳିଗଲା। ରାଗରେ ତା'ର ଲୁମ ଠାଙ୍କୁର ଉଠିଲା । ସେ ଆଖି କଟ୍ ମଟ୍ କରି ଭୋ ଭୋ ଭୁକି ବିରାଡ଼ି ପଛରେ ଗୋଡ଼ାଇଲା । ସେତେବେଳେ ତା'ର ଯେଉଁ ଭୟଙ୍କର ରୂପ, ତାକୁ ଦେଖିଲେ କିଏ ନ ଡରିବ ? ତା' ଆଖି ଖାଲି ଜଳୁଥାଏ ।

କୁକୁରକୁ ଏପରି ଦେଖି ବିରାଡ଼ି ବଡ଼ ଭୟରେ ରାସ୍ତା, ଗଳି, କନ୍ଦି ଯୁଆଡ଼େ ପାଇଲା ଜୀବନବିକଳରେ ପଳାଇଲା । ଆଉ ତା' ପଛେ ପଛେ କୁକୁରଟା ପାଗଳପରି ଗୋଡ଼ାଇବାକୁ ଲାଗିଲା ।

ସେହି ସମୟରେ ଝିଅଟିଏ କଳରୁ ପାଣିନେବାକୁ ଯାଉଥାଏ । କୁକୁରଟା ତା' ଆଡ଼କୁ ଧାଇଁ ଆସୁଥିବାର ଦେଖି ଡରିଯାଇ ରାସ୍ତାର ଗୋଟିଏ କଡ଼ରେ ଠିଆ ହୋଇଗଲା । ଝିଅଟିର ଆଈବୁଢ଼ୀ କୁକୁରକୁ ଦେଖି ବଡ଼ ପାଟିରେ ଡାକ ପକାଇଲା, "ଆଲୋ ଝିଅ, ପାଗଳା କୁକୁରଟାଏ ! ପଳେଇ ଆ, ନ ହେଲେ କାମୁଡ଼ିଦେବ ।"

ସେଠାରେ ଯିଏ ଯେଉଁଠି ଥିଲେ ବୁଢ଼ୀର ପାଟି ଶୁଣିଲେ । ସମସ୍ତେ ସେହି କୁକୁରଟିକୁ ପାଗଳା କୁକୁର ଭାବି କିଏ କୁଆଡ଼େ

ଦଉଡ଼ିବାକୁ ଲାଗିଲେ । ସମସ୍ତଙ୍କ ମୁହଁରେ ସେହି ଗୋଟିଏ କଥା "ପାଗଳା କୁକୁର ଆସୁଛି, ପଳା ପଳା !"

ଗୋଟିଏ ମୋଟା ଲୋକ କୁକୁରକୁ ଦେଖି ଗଛ ଉପରକୁ ଚଢ଼ିଯିବାରୁ ତା'ର ଗଣ୍ଡି ଲି ଦୁମ କରି ତଳେ ପଡ଼ିଗଲା । ଆଉ ଜଣେ ଲୋକ ପାଚେରୀ କାନ୍ଥ ଉପରକୁ ଚଢ଼ିଗଲାବେଳେ ତାଂ ଜାମାରୁ ଫଡ଼ାଏ ଚିରିଗଲା । ଗୋଟିଏ ମାଷ୍ଟ୍ରାଣୀ ଛତାଟିଏ ଧରି ସ୍କୁଲ୍‌କୁ ଯାଉଥିଲେ । ସେ କୁକୁରକୁ ଦେଖି ଭୟରେ ଥରି ଛତା ତଳେ



ଲୁଚିଗଲେ । କୁମ୍ଭାରଟିଏ ହାଣ୍ଡି ବୋଝ ନେଉଥିଲା । ସେ ହ୍ରାନଆଁ ହୋଇ ପଳାଇ ଯାଉ ଯାଉ ହାଣ୍ଡି ତାକ ତଳେ ପଡ଼ି ଚୂନା ହୋଇଗଲା । ପିଲା ଦୁଇଟି ରାସ୍ତାରେ ଖେଳୁଥିଲେ । ଢୋ- ଢୋ ଶବ୍ଦ ଶୁଣି ଘରୁ ମା' ଆସି ତାଙ୍କୁ ଏମିତି ଜୋରରେ ଟାଣିନେଲେ ଯେ ଦୁହିଁଙ୍କର ଦୁଇଟି ହାତ ଜଖମ ହୋଇଗଲା । ଏମିତି ହେଲା ଛୋଟି କୁକୁରଟି ପାଇଁ କେତେ ଯେ କାଣ୍ଡ ଘଟିଗଲା; ତାହା କିଏ କହିବ ?

ଉଠିଆସିଲେ ହୁଲସ୍ଥୁଲ ପଡ଼ିଗଲା । ସମସ୍ତଙ୍କ ମୁହଁରେ ସେହି ଗୋଟିଏ କଥା—"ହୁସିଆର, ପଳା ପଳା ! ପାଗଳ କୁକୁର ଆସୁଛି, କାମୁଡ଼ି ଦେବ ।" ଯିଏ ଯୁଆଡ଼େ ପାଇଲେ ଖାଲି ଧାଡି କରି ଦୌଡ଼ିବାକୁ ଲାଗିଲେ । ଏହାପରେ ସମସ୍ତଙ୍କର ହୋ ହୋ ଶବ୍ଦରେ ସହର ତମାମ ପଡ଼ିଗଲା ଉଠିଲା । ପାଟିତୁଣ୍ଡ ଗୋଳମାଳ ଶୁଣି ରାସ୍ତାର ସବୁ ବୁଲାକୁକୁର ମଧ୍ୟ ଭୁକି ଭୁକି ଏଣେତେଣେ ଦୌଡ଼ିଲେ ।

ସେତେବେଳେ ରାସ୍ତାରେ ଏତେ କୁକୁର ହୋଇଗଲେ ଯେ କେଉଁଟା ପାଗଳା କୁକୁର ତାହା ଜାଣିବା ଅସମ୍ଭବ ହୋଇପଡ଼ିଲା । ତେଣୁ ସମସ୍ତେ ପ୍ରତ୍ୟେକ କୁକୁର ପାଖରୁ ଏଣେ ତେଣେ ପଳାଇବାକୁ ଚେଷ୍ଟାକଲେ । ଲୋକେ ଯେତିକି ହୋଇ ବେଶି ଦଉଡ଼ିଲେ, କୁକୁରଙ୍କ ସଂଖ୍ୟା କ୍ରମେ ବଢ଼ିଲା ।

ଏତେବେଳେ ବିରାଡ଼ିଟି ଆଉ ଦଉଡ଼ି ନ ପାରି ଉପରେ ଗୋଟିଏ ଗଛ ଉପରକୁ ଚଢ଼ିଗଲା । ଫଳରେ ଗ୍ରେଟ କୁକୁରଟି ଆଉ ଅଧିକ ଦୂର ନ ଦଉଡ଼ି ସେହି ଗଛ ମୂଳରେ ଠିଆ ହୋଇଗଲା । ସଙ୍ଗେ ସଙ୍ଗେ ଅନ୍ୟ କୁକୁରଗୁଡ଼ିକ ମଧ୍ୟ ସେଇଠି ଅଟକିଗଲେ । ସେମାନେ ସେଇ ଗଛ ମୂଳରେ ଠିଆହୋଇ ଉପରେ ଥିବା କାଳିଆ ବିରାଡ଼ିକୁ ଚାହିଁ ବହୁତ ଭୁକିଲେ । ଏହା ଦେଖି ଲୋକମାନଙ୍କ ଭିତରୁ ଜଣେ ପାଟି କରି କହିଲା, "ଓହୋ ! ଏ କୁକୁରଗୁଡ଼ାକ ତ ଏଇ ବିରାଡିଟା ପଛରେ ଦଉଡ଼ୁଥିଲେ ।"

ଏଥର ଲୋକେ ପ୍ରକୃତ କଥା ବୁଝିପାରିଲେ । ସହର ଆସ୍ତେ ଆସ୍ତେ ଥଣ୍ଡା ପଡ଼ିଗଲା । ସମସ୍ତଙ୍କ ମୁହଁରେ ଗୋଟିଏ କଥା, "କୁକୁରଟା କେବଳ ବିରାଡ଼ି ପଛରେ ଦୌଡ଼ୁଥିଲା ଓ ଆମ୍ଭମାନଙ୍କୁ ବୋକା ବନାଇଦେଲା ।"

ଗଛଃ ତଳେ କୁକ୍କୁରମାନେ ବହୁ ସମୟ ଅପେକ୍ଷା କଲେ, ତଥାପି ବିରାଡ଼ି ଗଛରୁ ତଳକୁ ନ ଓହ୍ଲାଇବାରୁ ସେମାନେ ନିଜ ନିଜ ସ୍ଥାନକୁ ଫେରିଗଲେ । ସେହି ଶ୍ରେଷ୍ଠ କୁକୁରଟା ମଧ୍ୟ ମାଲିକ ଘରକୁ ଫେରିଗଲା ।

ଘରକୁ ଆସି ଆନନ୍ଦରେ କୁକୁରଟି ତା ଖାଉଁଦ ଗୋଡ଼ରେ ଘଷିହେଲା । ମାଲିକ ତାକୁ ଗୋଟିଏ ଆଣ୍ଠୁ ଉପରେ ବସାଇ ଆଉଁଷା-ଆଉଁଷି କରି ଆଦର କଲା । କିଛି ସମୟ ପରେ ଶ୍ରେଷ୍ଠ ବିରାଡ଼ିଟି ମଧ୍ୟ ଘରକୁ ଫେରିଲା ।

ବିରାଡ଼ିକୁ ଦେଖି କୁକୁର ଗର୍ଜନ କରି ତା ଉପରକୁ ଦୌଡ଼ିବାକୁ ଛଟପଟ କଲା । ମାଲିକ ପାଖରେ ଥିବାରୁ ବିରାଡ଼ି ମଧ୍ୟ ନିଶକୁ ଫୁଲାଇ, ନଖ ବାହାର କରି ଘଉ ଘଉ ହୋଇ ଉଠିଲା ।

ଲୋକଟି ଏହା ଦେଖି ବିରାଡ଼ିକୁ ଟେକିନେଇ ତା'ର ଅନ୍ୟ ଆଣ୍ଠୁ ଉପରେ ବସାଇ ଆଉଁଷି ଦେଲା । ସେ ଦୁହିଁଙ୍କି କହିଲା— "ଦେଖ ତୁମ ଦୁହିଁଙ୍କୁ ମୁଁ ଭଲ ପାଏ । ତୁମ ଭିତରୁ ଜଣକୁ କେବଳ ମୁଁ ଆଦର କରିପାରିବି ନାହିଁ । ଏଣିକି ତୁମେ ଦୁହେଁ କଜିଆ ବନ୍ଦ କରି ଏକାଠି ଖେଳାବୁଲା କର ।"

**ପ୍ରଶ୍ନ**—୧ । ଆଈବୁଢ଼ୀ ଭଲ କୁକୁରକୁ ପାଗଳା କହିବା ଯୋଗୁଁ ସହରରେ କି କି କାଣ୍ଡ ଘଟିଗଲା ?

୨ । କୁକୁର ବିରାଡ଼ି ଦୁହେଁ ଦୁହିଁଙ୍କୁ କିପରି ଭଲ ପାଇଲେ ?

୩ । ଶୂନ୍ୟ ସ୍ଥାନ ପୂରଣ କର—

ରାସ୍ତାରେ ଏତେ—ହୋଇଗଲେ ଯେ କେଉଁଟା—

କୁକୁର ତାହା ଚିହ୍ନିବା—ହୋଇପଡ଼ିଲା ।

---




ରାସ୍ତା କଡ଼ରେ ଗଛଟିଏ ମୁଁ
ରାସ୍ତା କଡ଼ର ଗଛଟିଏ,
ତୁମେ ଯେବେ ଯାଅ ଏଇ ବାଟେ
ଖରାରେ ତୁମକୁ ଛାଇ ଦିଏ,
ରାସ୍ତା କଡ଼ର ଗଛଟିଏ ।

ନାହିଁ ତ ମୋହର ଧନ, ମାନ
କରିପାରିବି ନ ଫଳ ଦାନ
ବସିଗଲେ ଟିକେ ମୋ ଛାଇରେ
ଶୀତଳ ପବନେ ବିଞ୍ଚିଦିଏ,
ରାସ୍ତା କଡ଼ର ଗଛଟିଏ ।

ଖରା ବରଷା ମୁଁ ସହେ ନିତି
ଏଇଠି ବସିଛି ମୁଣ୍ଡପାତି
କରୁଛି ବୋଲି ମୁଁ ପର-ସେବା
ମନେ ମନେ ଗଉରବ ନିଏ,
ରାସ୍ତା କଡ଼ର ଗଛଟିଏ ।

ମୋତେ ଯେବେ ତୁମେ ଦେବ ହାଣି
ଚୁଲିରେ ହୋଇବ ଜାଳୁଆଣି
ତୁମେ·ତ ତା' ହେଲେ ରଖ ଜାଣି
ଏକା ମାଢରେ·କ ଶୀତ ଯାଏ !
ରାସ୍ତା କଡ଼ର ଗଛଟିଏ ।

କାଲି ତ ଆସିବ ଏଇ ବାଟେ,
ତୁମକୁ ପର୍ଦ୍ଦା ବା ଖରା କାଟେ,
କାହାକୁ ମାଗିବ ଛାଇ ଟିକେ ?
ନ ଥିଲେ ମୁଁ ଛାହା ଦେବ କଏ ?
ରାସ୍ତା କଡ଼ର ଗଛଟିଏ ।

ଏଇବାଟେ ନିତି ଆସୁଥାଅ
"ଦୁନିଆର ସେବା କରୁଥାଅ"
ମୁଁ ପରା ସଭିଙ୍କୁ ଏହା କହେ—
ରାସ୍ତା କଡ଼ର ଗଛଟିଏ ମୁଁ
ରାସ୍ତା କଡ଼ର ଗଛଟିଏ ।

ପ୍ରଶ୍ନ—୧ । ରାସ୍ତା କଡ଼ର ଗଛଗୁଡ଼ିକ ଆମର କଣ ଉପକାର କରନ୍ତି ?

୨ । 'ଏକା ମାଢରେ ଶୀତ ଯାଏ !'
ଏହି ବାକ୍ୟଟିର ଅର୍ଥ ନିଜ ଭାଷାରେ ବୁଝାଇ କହ ।

୩ । ଗଛଟି ଆମକୁ କି ଶିକ୍ଷା ଦେଉଛି ?

---

# ଛେଳି ବାଘକୁ ମାରିଲା

ତୁମେ ସମସ୍ତେ ଜାଣ ବାଘ ଛେଳି ଶିକାର କରେ । କିନ୍ତୁ ଛେଳି ମଧ୍ୟ ବାଘ ମାରିପାରେ, ଏକଥା ଶୁଣିଲେ ତୁମକୁ ନିଶ୍ଚୟ ଆଶ୍ଚର୍ଯ୍ୟ ଲାଗିବ ।

ମଧ୍ୟପ୍ରଦେଶରେ ମେମିଡ଼ି ଅଞ୍ଚଳର ଗୋଟିଏ ଘଟଣା । ସିଏଙ୍ଗି ବୋଲି ଗୋଟିଏ ଗାଁ ମନ୍ଦିର ପାଖରେ ଡାକା ବୋଲି ଗୋଟିଏ ଛେଳି ରହୁଥାଏ । ଯେଉଁମାନେ ମନ୍ଦିରକୁ ସେବାପୂଜାପାଇଁ ଆସନ୍ତି ସେମାନେ ଛେଳିକୁ ଫଳମୂଳ ଦେଇ ଯାଆନ୍ତି । ଠାକୁରଙ୍କ ଛେଳି ବୋଲି ତା ମୁଣ୍ଡରେ ଫୁଲ ମଧ୍ୟ ଚଢ଼ାନ୍ତି ।

ଆଗରୁ କିନ୍ତୁ ସେ ଛେଳିକୁ ଲୋକେ ଏପରି ପୂଜା କରୁ ନ ଥିଲେ । ପ୍ରଥମେ ସେ ଯେତେବେଳେ ବୁଲିବୁଲି ଆସି ସିଏଙ୍ଗି ଗାଆଁରେ ପହଞ୍ଚିଲା, ସେତେବେଳେ ସମସ୍ତଙ୍କୁ ଶିଙ୍ଗ ଦେଖାଇ ମାରି ଗୋଡ଼ାଇଲା । ଗୃହସ୍ଥମାନଙ୍କ ଧାନ କିଆରିର ପଶି ଫସଲ ନଷ୍ଟ କଲା, ଏପରିକି ଲୋକଙ୍କ ଘରେ ପଶି ଖାଇବା ଜିନିଷ ଯାହାସବୁ ପାଇଲା ତାହା ମଧ୍ୟ ଖାଇଗଲା । ଲୋକେ ଛେଳିର ଉପଦ୍ରବରେ ବଡ଼ ବ୍ୟସ୍ତ ହୋଇପଡ଼ିଲେ ।

ଥରେ ସେ ଗ୍ରାମରେ ଗୋଟିଏ ମଣିଷଖିଆ ବାଘ ଆସି ଉତ୍ପାତ ଆରମ୍ଭ କଲା । ବାଘ କେବେ କେବେ ଗୋରୁ ଗାଈ ଖାଇଦେଲା, ବେଳେ ବେଳେ ପିଲାଙ୍କୁ ମଧ୍ୟ ଟେକିନେଇ ବଣକୁ ପଳାଇଗଲା । କାଠୁରିଆମାନେ ବଣରୁ ଫେରିଲାବେଳେ ସେମାନଙ୍କ ମଧ୍ୟରୁ କାହାକୁ ଉଠାଇନେଲା । ଏହିପରି ବାଘ ଯୋଗୁଁ ସମସ୍ତେ ହଇରାଣ ହେଲେ । ଏହି ଖବର ପାଇ ଦୁଇଜଣ ଭଲ ଶିକାରୀ ତାଙ୍କର ବନ୍ଧୁକ ଧରି ସେ ଗାଆଁକୁ ଆସିଲେ । ବାଘ ଶିକାର କରିବାପାଇଁ ସେମାନେ ପ୍ରଥମେ ଗୋଟିଏ ଜାଆନ୍ତା ଚାରା ଖୋଜିଲେ ।

ଗାଁର ଜଣବା ପାଇଁ ସମସ୍ତଙ୍କ ଆଖି ପ୍ରଥମେ ଯାଇ ଡ଼ାକା ଉପରେ ପଡ଼ିଲା । ଡାକାକୁ କୌଣସି ଉପାୟରେ ଯଦି ଦଉଡ଼ିରେ ଗୋଟିଏ ଗଛ ଦେହରେ ବାନ୍ଧି ଦିଆଯାଏ, ତେବେ ବାଘ ତାକୁ ନିଶ୍ଚୟ ଖାଇ ବସିବ ଏବଂ ସେହି ସମୟରେ ଶିକାରୀମାନେ ବାଘକୁ ମାରିଦେବେ । ତାହାହେଲେ ବାଘ ମରିବ, ଆଉ ଏଇ ଦୁଷ୍ଟ ଲୋକଟା ମଧ ବଞ୍ଚିରହିବ ନାହିଁ । ପୁଣି ଏ କଥା ସଫଳ ହେଲେ ଲୋକଙ୍କୁ ହତ୍ୟା କରିଥିବା ଯୋଗୁଁ ପାପ ଗ୍ରାମବାସୀମାନଙ୍କୁ ନ ଲାଗି ବାଘ ଉପରେ ଯିବ ।

ଡାକାକୁ ଧରିବା କିନ୍ତୁ ଜାଟିକର ପାଠ । ସାହସ ଓ ବୁଦ୍ଧି ନ ଥିଲେ ସେ ସହଜରେ ଧରାପଡ଼ିବ ନାହିଁ । ଗାଁର ସମସ୍ତେ ଗୁରିଆଡ଼ୁ ଘେରି ତାକୁ ଧରିବାପାଇଁ ଯୋଗାଡ଼ କଲେ । ଅନେକ ଥର ସେ ଲୋକଙ୍କ ଘେରା ଭାଙ୍ଗି ଏଣେତେଣେ ପଳାଇଲା । ବହୁ ଲୋକଙ୍କୁ ଏପରି ଭୂଷା ମାଇଲା ଯେ ସେମାନେ ଜଖମ ହୋଇଗଲେ ।

ଶେଷରେ ବହୁ କଷ୍ଟରେ ଡାକା ଧରା ପଡ଼ିଲା । ତାକୁ ଲୋକେ ଦଉଡ଼ିରେ ବାନ୍ଧି ଟାଣି ଓଟାର ଗୋଟିଏ ନାଳ ପାଖକୁ ନେଇଗଲେ । ନାଳଟାର ଓସାର ବେଶୀ ନୁହେଁ, ମାତ୍ର ଗଭୀର ଖୁବ୍ ବେଶୀ । ନାଳରେ ପାଣି ଭର୍ତ୍ତି ହୋଇଥାଏ । ନାଳର ଗୋଟିଏ ପାଖରେ ଗୃହଜମି, ଆରପଟେ ଭୀଷଣ ଜଙ୍ଗଲ । ନାଳ ପାଖକୁ ଥିବା ଗୋଟିଏ ଆମ୍ବ ଗଛରେ ଡାକାକୁ ଗୋଟିଏ ଦଉଡ଼ିରେ ବାନ୍ଧି ଦିଆଗଲା । ତାର ଅଳ୍ପ ଦୂରରେ ଆଉ ଗୋଟିଏ ଗଛ ଉପରେ ସେହି ଶିକାରୀ ହାତରେ ବନ୍ଧୁକ ଧରି ବସି ରହିଲେ ।

ବହୁ ସମୟ ପର୍ଯ୍ୟନ୍ତ ଲୋକଟି ଭୀଷଣ ଚିତ୍କାର କଲା । ତାପରେ ନାଳର ଅନ୍ୟ ପାଖରେ ଥିବା ଜଙ୍ଗଲ ଭିତରୁ ଶୁଭିଲା ଆହୁରି ଭୟାନକ ଗର୍ଜନ—ବାଘ ଗର୍ଜନ । ହଠାତ୍ ବାଘଟା ଆସି ଲୋକ ପାଖରେ ଗୋଟିଏ କୁଦା ଦେଇ ହାଜର !

ଶିକାରୀ ଦି ଜଣଯାକ ବାଘକୁ ଦେଖିଲେ ଓ ବନ୍ଧୁକର ଘୋଡ଼ା ଉପରେ ହାତ ଦେଲେ, କିନ୍ତୁ ଗୁଳି ଗୋଟିଏ ମାତ୍ର ଫୁଟିଲା । ଜଣେ ଶିକାରୀଙ୍କ ବନ୍ଧୁକର ଘୋଡ଼ାଟା କାମ ନ କରି ଅଟକିଗଲା । ଅନ୍ୟ



ଶିକାରୀଙ୍କ ଗୁଳି ଫୁଟିଲେ ମଧ୍ୟ ତାହା ବାଘ ଦେହରେ ବାଜିଲା ନାହିଁ । ଶିକାରୀମାନଙ୍କ ଆଡ଼କୁ ବାଘ ଛୁଟିଆସିବା ଆଗରୁ ବନ୍ଧୁକରେ ଗୁଳି ପୂରାଇବାକୁ ବେଳ ମିଳିବ କି ନାହିଁ ଭାବନା ପଡ଼ିଲା ।

ବନ୍ଦ କରେ ଗୁଳି ଫୁଟାଇବା ଆଉ ଦରକାର ପଡ଼ିଲା ନାହିଁ । କ୍ଷଣେ ଚିନ୍ତା କରି ଡାକା ତାର ସବୁଯାକ ବଳ ଖଟାଇ ଶିଙ୍ଗ ଉଞ୍ଚାଇ ବାଘକୁ ଗୋଟିଏ ଭୂଷା ଦେଲା । ସେହି ଭୂଷାରେ ବାଘ ତାର ଗୋଡ଼ ଠିକ୍ ଟେକିପାରିଲା ନାହିଁ । ପଛେଇ ଯାଇ ନାଳ ଭିତରେ ପଡ଼ିଗଲା ଏକାବେଳକେ ପନ୍ଦର ହାତ ତଳେ । ତାପରେ ସବୁ ସ୍ଥିର—ଚୁପ୍ ଚାପ୍ ।

କିଛି ସମୟ ପରେ ଶିକାରୀ ଦୁ'ଜଣ ଗଛରୁ ଡରି ଡରି ଓହ୍ଲାଇଲେ । ନାଳ ପାଖକୁ ଯାଇ ଦେଖିଲେ, ବାଘର ହାଡ଼ ଭାଙ୍ଗି ଯାଇଛି ଓ ସେ ଉଠି ନ ପାରି ନାଳ ଭିତରେ ଛଟପଟ ହେଉଛି । ଡାକାର କିଛି ହେଲେ ହୋଇ ନାହିଁ ।

ଖବରଟା ସଙ୍ଗେ ସଙ୍ଗେ ଚଉଆଡ଼େ ବ୍ୟାପ୍ତ ହୋଇଗଲା । ଏତେ ବଡ଼ ମହାବଳ ବାଘକୁ ଡାକା ମାରିଦେଇଛି, ଏ ତ କମ୍ କଥା ନୁହେଁ । ଗାଁରୁ ଦଳ ଦଳ ହୋଇ ସମସ୍ତେ ଡାକାକୁ ଦେଖିବାକୁ ଧାଇଁଲେ । ଡାକା ବଡ଼ ସ୍ଥିର ହୋଇ ଠିଆ ହୋଇଥାଏ । ତା ଆଖିରୁ ଲୁହ ଗଡ଼ିଯାଉଥାଏ । ସମସ୍ତେ ତାକୁ ଆଉଁସିବାକୁ ଲାଗିଲେ ।

ସେହିଦିନଠାରୁ ଡାକା ଲୋକମାନଙ୍କ ଓ ସମସ୍ତେ ତାକୁ ଈଶ୍ୱରଙ୍କ ଦୂତ ବୋଲି ପୂଜାକଲେ ।

ପ୍ରଶ୍ନ—୧ । 'ବୀର' ଅର୍ଥ କଣ ? ଲୋକେ କାହିଁକି ଡାକାକୁ ବାଘର ବୀର ରୂପେ ବାନ୍ଧିଲେ ?

୨ । ଡାକାକୁ ଲୋକେ କାହିଁକି ପୂଜା କଲେ ?

୩ । ଉପଦ୍ରବ, ଉତ୍ପାତ, ଜଙ୍ଗମ, ଚିତ୍କାର, ସଫଳ, ଦୂତ ଓ ବ୍ୟାପ୍ତ—ଏଗୁଡ଼ିକର ଅର୍ଥ ଲେଖ ।




ସାଗର ରାଜା ଝିଅ କି ଲୋ, ଇନ୍ଦ୍ର ରାଜା ବୋହୂ,
ମୌସୁମୀର କାନେ କାନେ କେଉଁ କଥାଟି କହୁ ?
ବଡ଼ ଆକାଶ ବର ତୋର ବଡ଼ ପାହାଡ଼ ସାଥୀ
ବିଜୁଳି ତୋର ସିନ୍ଦୂର ଶାର ଉଜଳ କରେ ରାତି ।
ଟିକି ଝିଅ ଛଟା ଲୁଚପଲ ଚନ୍ଦ-ପଛେ ତରଳ ଲୁଚେ
ଟିକି ମୁହଁଟି ଦେଖାଇଦିଏ ପଣତ ଯେବେ ଘୁଞ୍ଚେ ।
ଆକାଶ ଯେବେ ରାଗରେ ଦିଏ ଘଡ଼ଘଡ଼ିର ରଡ଼
କଜଳ କଳା ଆଖିରୁ ତୋର ମୁକୁତା ପଡ଼େ ଝଡ଼ି ।
ଭୂଇଁରେ ପଡ଼ି ହୁଏ ସେ ପାଣି ଭରେ ପୋଖରୀ ନଈ
ସବୁଜ କ୍ଷେତେ ଚଷା ପୁଅର ଅଣ୍ଟାଟି ଯାଏ ନଇଁ ।
ସାଗୁଆ ଘାସେ ଫୁଲ ପରାଗ ଦେହସାକରେ ବୋଳି
ସାଧବବୋହୂ, ନାଲିଆ ପକ୍ଷୀ ନାଚଇ ଢଳ ଢଳ ।
ଭରା ନଈରେ ନାଆଟି ମେଲି ଆମ ନାଉରୀ ଭାଇ
ଏପାରି ଲୋକ ସେପାରି କରେ ତୋହରି ଗୀତ ଗାଇ ।
ବଡ଼ ଉଦାର ମନଟି ତୋର ବାଛୁନ ବଡ଼ ସାନ
ସୁନ୍ଦର କରୁ ଖାଲି ସଂସାର ରଖୁ ସବୁରି ମାନ ।

ଧାନରେ ଭରୁ ମିଠା ଗୁଡ଼ଲ ଫଳରେ ଭରୁ ରସ,
ଜୀବନ ଦେଉ ଯୀଶୁ ଜଗତେ ସନେହେ କରୁ ବଶ ।
ତୋହର ମନ ଦେଇ ଯା ମୋତେ ହେବ ତୋହର ପର
ପର ହୃଦରେ ମୋ ଦେହ ମନ ପରାଣ ହେଉ ଭର ।

ପ୍ରଶ୍ନ—୧ । ଏହି ପଦ୍ୟରେ ଆକାଶ, ଗ୍ରହ, ବର୍ଷା, ଜଙ୍ଗଲ, ପାହାଡ଼ ପ୍ରଭୃତିଙ୍କୁ କେଉଁ ରୂପରେ ବର୍ଣ୍ଣନା କରାଯାଇଅଛି ?

୨ । ବରଷା ହେଲେ କଣ ହୁଏ ଓ ତହିଁରୁ ଆମକୁ କି ଶିକ୍ଷା ହୁଏ ?

---

## ବାଇବେଲରୁ ଗୋଟିଏ ଗପ

ଗୋଟିଏ ରାଜ୍ୟରେ ଜଣେ ଦୁଷ୍ଟ ରାଜା ଥିଲେ । ସେ ପ୍ରଜାମାନଙ୍କ କଥା କିଛି ବୁଝୁ ନ ଥିଲେ । ଅଧିକାଂଶ ସମୟରେ ସେମାନଙ୍କ ଉପରେ ଶୋଷଣ ଅତ୍ୟାଚାର କରୁଥିଲେ । ଦିନେ କୌଣସି କାରଣରୁ ସେ ତାଙ୍କ ରାଜ୍ୟରେ ରହିଲେ ଲୋକଙ୍କ ଉପରେ ବରକ୍ତ ହୋଇଗଲେ । ସେଦିନ ସେ ମନେ ମନେ ଭାବିଲେ, "ଏ ଲୋକଗୁଡ଼ାଙ୍କୁ ଅତି ଅଧିକ ଶାସ୍ତି ଦେବା ଦରକାର । ଏମାନଙ୍କ ବଂଶ ମୂଳରୁ ନପାତ କରିବାକୁ ହେବ ।" ଏହା ଭାବି ତାଙ୍କର କର୍ମଚାରୀମାନଙ୍କୁ ଡାକି ଆଦେଶ ଦେଲେ, "ରାଜ୍ୟରେ ଯେଉଁ ପିଲା ନୂଆ ହୋଇ ଜନ୍ମହେବ, ତାକୁ ମୋ ନିକଟକୁ ଧରି ଆଣିବ । ସେମାନଙ୍କୁ ମାରିଦେଲେ ଏ ରାଜ୍ୟରେ ଆଉ କାହାର ବଂଶ ବଢ଼ିପାରିବ ନାହିଁ ।" ଏପରି ଆଦେଶରେ ରାଜ୍ୟସାରା ହଇଚଇ ପଡ଼ିଗଲା ।

ସେହି ରାଜ୍ୟରେ ଏକ ଗରିବ ପରିବାରରେ ଗୋଟିଏ ସାନ ପିଅ ଥାଏ । ତାର ନାଁ ମହିଆମ । କିଛି ଦିନ ପରେ ତାର କୁନି ଭାଇଟିଏ ଜନମିଲା । ଭାଇଟିକୁ ଦେଖି ମହିଆମର ଖୁସି କୁଣ୍ଢେ ମୋଟ । ସେଦିନ ତାରି ଆନନ୍ଦ କହିଲେ ନସରେ । ସେ ଡେଇଁ ଡେଇଁ ବୁଲିଆଉଁ କହି ଆସିଲା ଯେ ତାର ଟିକି ଭାଇଟିଏ ହୋଇଛନ୍ତି ।

ଠିକ୍ ଏତିକିବେଳେ ରାଜାଙ୍କ ଲୋକ ଢଙ୍କୁରା ଦେଇଗଲେ ଯେ ନୂଆ ହୋଇ ଜନ୍ମିଥିବା ପିଲମାନଙ୍କୁ ରାଜାଙ୍କ ପାଖକୁ ଧରି ନିଆଯିବ । ଏକଥା ଶୁଣି ମହିଆମର ମନ ଫିକା ପଡ଼ିଗଲା । ସେ ତାର ମା ପାଖକୁ ଦୌଡ଼ିଯାଇ ପଚାରିଲା, "ମା, ଆମ ପୁଅକୁ କଣ ରାଜାଙ୍କ ଲୋକ ଧରିନେବେ ?

ମନ ଦୁଃଖରେ ମା ଉତ୍ତର ଦେଲେ, "ହଁ ମା, ସବୁ ପିଲଙ୍କୁ ଯେତେବେଳେ ନେଉଛନ୍ତି, ଯାଙ୍କୁ ନିଶ୍ଚୟ ନେଇଯିବେ ।" ମହିଆମ କହିଲା, "ନା, ନା, ଆମେ ପୁଅକୁ ଦେବା ନାହିଁ । ତାକୁ ଏମିତି ଗୋଟାଏ ସ୍ଥାନରେ ଲୁଚାଇ ରଖିଦେବା ଯେ ରଜାଙ୍କର ଲୋକ ଖୋଜି ପାଇବେ ନାହିଁ ।" ମହିଆମର କଥାଟି ମା'ଙ୍କ ମନକୁ ପାଇଲା । ସେ ପୁଅକୁ ଲୁଚାଇବାର ଉପାୟ ପାଞ୍ଚିଲେ ।

ଶେଷରେ ମା' ଭାବି ଭାବି କହିଲେ, "ଆମେ ଉଙ୍ଗା ଭଳି ଗୋଟିଏ ଛୋଟ କୋଠା ତିଆରି କରିବା । ସେଇଟି ଏମିତି ତିଆରି ହେବ ଯେ ସେଥିରେ ପାଣି ପଶିପାରିବ ନାହିଁ । ଆମେ ପୁଅଟିକୁ ଖଣ୍ଡେ କମ୍ବଳରେ ଘୋଡ଼ାଇଦେଇ ସେହି ଡୋଲା ଭିତରେ ଶୁଆଇ ଦେବା ଓ ତା' ପରେ ଡୋଲାଟିକୁ ନଈ କୂଳରେ ଯେଉଁ ବୁଦାଗୁଡ଼ିକ ଅଛନ୍ତି, ତାର ଭିତରେ ଲୁଚାଇଦେବା । ତାକୁ ଆଉ ରଜାଙ୍କର ଲୋକେ ଖୋଜି ପାଇବେ ନାହିଁ ।

ମା'ଙ୍କ କଥା ଶୁଣି ମଇଆମ ଖୁସିରେ ତାଳି ମାରି ନାଚି ନାଚି କହିଲା, "ହଁ ମା, ଆମେ ସେଇଆ କରିବା । ଗୋଟିଏ ଭଲ ଉପାୟଟାଏ ତମର ମନେ ପଡ଼ିଛି । ସେଠାରେ ପୁଅ ରହିଲେ କେହି ଖୋଜି ପାଇବେ ନାହିଁ ବା କେହି ସେଆଡ଼କୁ ଅନେଇବେ ନାହିଁ । ପୁଅଟି କେତେବେଳେ କାନ୍ଦିଉଠେ, ତେବେ ମଧ୍ୟ କେହି ଶୁଣିପାରିବେ ନାହିଁ ।"

ମା' ଝିଅ ଦୁହେଁ ମିଶି ସାଙ୍ଗେ ସାଙ୍ଗେ ଗୋଟିଏ ଦୋଳା ତିଆରି କଲେ । ପୁଅକୁ ତା' ଭିତରେ ରଖିଦେଇ ନିର୍ଦ୍ଦିଷ୍ଟ ଜାଗାରେ ଅନ୍ୟ କେହି ନଥିବା ବେଳେ ଲୁଚାଇ ଦେଲେ । ମଇଆମ ନଈକୂଳରେ ବୁଲିଲା ଓ ପିଲାଟିକୁ ଜଗିରହିଲା ।

ଚାରିଆଡ଼ ଶୁନ୍‌ଶାନ୍ । ଏହି ସମୟରେ ଖସ୍‌ଖସ୍ ଶବ୍ଦ ଶୁଣିପାରି ମଇଆମକୁ ଡର ଲାଗିଲା । ଚାରିଆଡ଼କୁ ଚାହିଁ ସେ ଦେଖିଲା, ସେହି ଦୁଷ୍ଟ ରଜାର ଝିଅ ତା ଆଡ଼କୁ ଆସୁଛି । ଏମାନେ ପିଲାଟିକୁ ଲୁଚାଇଲାବେଳେ ରଜାଝିଅ ଦୂରରୁ ତାହା ଦେଖିପାରିଥିଲା ବୋଲି ମଇଆମର ଆଶଙ୍କା ହେଲା । ସତକୁ ସତ ରଜାଝିଅ ନଈକୂଳକୁ ଆସି ଦୋଳା ଆଡ଼କୁ ହାତ ଠାରି ଦେଖାଇ ତା ଚାକରାଣୀକୁ କହିଲା, "ସେଇଟା କ'ଣ କି ? ଏଠାକୁ ଆଣିଲୁ ଦେଖିବା ।"

ଏକଥା ଶୁଣି ମଇଆମ ଡରରେ ଥରିବାକୁ ଲାଗିଲା । ଚାକରାଣୀ ଦୋଳାଟିକୁ ଉଠାଇ ନେଇ ରଜାଝିଅ ପାଖରେ ଥୋଇଦେଲା । ରଜାଝିଅ ପିଲାଟି ଦେହରୁ କମ୍ବଳ ଉଠାଇଦେଲା । କମ୍ବଳଟିକୁ ଖୋଲିଦେଲା ମାତ୍ରେ ପିଲାଟି ଥଣ୍ଡା ପାଇ କାନ୍ଦି ଉଠିଲା ।

ରଜାଝିଅ କହିଲା, "ଆହା ! କେଡ଼େ ସୁନ୍ଦର ପିଲାଟିଏ ହୋଇଛି !" ହଠାତ୍ ବାବାଙ୍କ ନିଷ୍ଠୁର ଆଦେଶ ମନେ ପଡ଼ିଯିବାରୁ ତାର ମୁହଁ କଳା ପଡ଼ିଗଲା । ସେ ବୁଝିପାରିଲା, "ନିଶ୍ଚୟ କେହି ବାପାଙ୍କ କର୍ମଚାରୀମାନଙ୍କଠାରୁ ତା' ପିଲାଟିକୁ ଏଠି ଲୁଚାଇ ରଖିବାକୁ ଚେଷ୍ଟା କରିଛି ।"

ଏମିତି କଟୁଁବେଳ ବିତିଗଲା । ପିଲାଟିକୁ ଛାଡ଼ିଦେବାକୁ ରଜାଝିଅର ଇଚ୍ଛା ହେଲା ନାହିଁ । ସେ ରାଜରାଣୀକୁ କହିଲା, "ମୁଁ ଏ ପିଲାଟିକୁ ନେଇ ପାଳିବି । ମୋ ପୁଅ ବୋଲି ଜାଣିଲେ କେହି ନେଇ-ଯିବାକୁ ସାହସ କରିବେ ନାହିଁ ।"



ମଇଆମ ତ ନିକଟରେ ବୁଢ଼ା ଆଡ଼ୁଆଳରେ ଲୁଚିଥିଲା । ଯେମିତି ଏତିକି ଶୁଣିଲା, ସେମିତି ଦୌଡ଼ିକି ଡେଇଁପଡ଼ି ରଜାଝିଅଙ୍କୁ ମୁଣ୍ଡିଆ ମାରିଲା । ତା'ପରେ ସେ ତାଙ୍କୁ ଧୀର ଭାବରେ କହିଲା, "ଏ ପିଲାଟି ମୋର ଭାଇ । ଆପଣ ତ ରଜାଝିଅ, ତାକୁ ନ ମାରି ପାଳିଲେ ଆପଣଙ୍କର ଧର୍ମ ହେବ । ଆପଣ କଣ ଗୋଟିଏ ପିଲାର ଖବର ବୁଝିପାରିବେ ନାହିଁ ?"

ରାଜକୁମାରୀ ଉତ୍ତର ଦେଲା, "ମୁଁ ପିଲାଟିକୁ ପାଳିବାକୁ ପ୍ରସ୍ତୁତ ଅଛି, କିନ୍ତୁ ଏହାର ଖାଇବା, ଗାଧୋଇବା ଆଦି ସବୁ କାମ କିଏ ବୁଝିବ ? ଗୋଟିଏ ଧାଈ ମିଳିଲେ ଯିନା ମୁଁ ଦାୟିତ୍ୱ ନିଅନ୍ତି ।"

ମଣିଆମକୁ ଧାଙ୍ଗେ ସାଙ୍ଗେ ଗୋଟିଏ ବୁଦ୍ଧି ଦେଖାଗଲା । ସେ କହିଲା, "ଆଜ୍ଞା, ମୁଁ ଜଣେ ଭଲ ଧାଈକୁ ଚିହ୍ନିଛି । ସେ ପିଲାଟିର ଦେଖାଶୁଣା ଭଲ ଭାବରେ କରିପାରିବ ।"

ମଣିଆମ କଥାରେ ରଜାଝିଅ ଟିକିଏ ହସିଦେଇ କହିଲା, "ଆଚ୍ଛା, ସେ ଧାଈକୁ ମୋ ପାଖକୁ ଡାକିଦେ ।" ଏହା ଶୁଣି ମଣିଆମ ଘରମୁହାଁ ଧାଇଁ ଦୌଡ଼ିଲା । ଘରେ ପହଞ୍ଚି ମା'କୁ ସବୁ କଥା କହିଲା । ମା' ତାହା ଶୁଣି ଝିଅର ବୁଦ୍ଧିକୁ ପ୍ରଶଂସା କଲେ ଓ ଧାଙ୍ଗେ ସାଙ୍ଗେ ରଜାଝିଅ ପାଖରେ ପହଞ୍ଚିଲେ ।

ନୂଆ ଧାଈକୁ ରଜାଝିଅ ପଚାରିଲା, ମୁଁ ଏଇ ପିଲାଟିକୁ ଜଙ୍ଗଲରୁ ପାଇଛି । ଆଜିଠାରୁ ତାକୁ ମୋ ନିଜ ପିଲା ଭଳି ପାଳିବି, କିନ୍ତୁ ପିଲାଟିର ଭଲ ମନ୍ଦ ବୁଝିବାପାଇଁ ମୋର ଗୋଟିଏ ଧାଈ ଦରକାର । ତୁମେ କଣ ପିଲାଟିର ଯତ୍ନ ନେଇପାରିବ ?

ମଣିଆମର ମା'ଆ ଆନନ୍ଦରେ କହିଲେ, "ହଁ ଆଜ୍ଞା, ପାରିବି ।" ସେହିଦିନଠାରୁ ମଣିଆମର ମା ଧାଈରୂପେ ରଜାଙ୍କ ନଅରରେ ରହି ପୁଅର ସବୁ କଥା ବୁଝିଲେ ।

ପିଲାଟି ଧାଈର ଯତ୍ନରେ ଉଜ୍ଜଳ ଡାଉଲ ହୋଇ ବଢ଼ି ଉଠିଲା । ପରେ ବଡ଼ ହୋଇ ସେ ନିଜର ମା' ଓ ଭଉଣୀକୁ ଚିହ୍ନିପାରିଲା ଏବଂ ତିନିଜଣଯାକ ଆନନ୍ଦରେ କାଳ କାଟିଲେ ।

କଥାରେ ଅଛି ଯାହାକୁ ଭଗବାନ ବଞ୍ଚାଇବେ, ତାକୁ କିଏ ମାରିପାରିବ ?

ପ୍ରଶ୍ନ—୧ । ଭଉଣୀ ଭାଇକୁ କାହିଁକି ଲୁଚାଇବାକୁ କହିଲା ?

୨ । ପିଲାଟି କିପରି ରକ୍ଷା ପାଇଲା ?

# ଶାରୀର ବିକଳ

"ପଞ୍ଜୁରୀ ଭିତରେ ମଝି ଖଞ୍ଜା ତଳେ
ରହୁଥିଲା ଗୋଟେ ଶାରୀ,
ଦେହଟି ତାହାରି ଚକ୍‌କଣ କାଳିଆ
ଥଣ୍ଟ ଟିଗାଟି ନାଲି ସାରୁ ।

ମଣିଷ ପରି ସେ ଡାକ ଛାଡ଼ି ଦିଏ
ଗୀତରେ ପଶିଲେ ଘେର,
ଶୁଣିବାକୁ ମୋତେ ଭଲ ଲାଗେ ନିତି
ତାହାର ମଧୁର ସ୍ୱର ।

ଝରଦାନେ ସତେ ଦକ୍ଷିଣା ପବନ
ବହୁଥିଲା ସାଇଁ ସାଇଁ,
ଲାଗିଲା ଖଞ୍ଜାରେ କାହୁଁ ଆସି ନିଆଁ
ସମସ୍ତେ ଥିଲେ ତ ଶୋଇ ।

ଦଣ୍ଡକ ଭିତରେ ଖଞ୍ଜା ଭିତରଟା
ଧୁହୁଁ ଧୁହୁଁ ଗଲା ଜଳି,
ବାପା ବୋଉ ଆଉ କୁନା କୁନି ଆମେ
ଦାଣ୍ଡକୁ ଆସିଲୁ ଚଳି ।

ମନେ ପଡ଼ିଲାନି ତାହାର ଟିକିଏ
ଯେବେ ଆସିବାକୁ ଶାରୀ,
କହୁଥିଲା ସିଏ, 'ବାପା ବୋଉ ମୋର
ନିଅ ଏଥୁ ମୋତେ କାଢ଼ି ।

ଘୃଣଆଡ଼ୁ କଥା                    ମାଡ଼ ଆସିଲଣି
ଥରୁଛି ମୋହର ଦେହ,
କୁନି କୁନ ମୋର                    ଡଉଡ଼ ଆସିଣ
ମୋତେ ଏଠୁ ନେଇଗ ନଅ ।'

ଶାଗର ଡାକରେ                    କୋଉଠୁ ସ୍ନେହରେ
ଉଠିଥିଲା ଖାଲି କୋହ,
ବାପା ପୋଛୁଥିଲେ                    କାନରେ ତାଙ୍କର
ଆଖିପତା ଧାର ଲୁହ ।



ଗାଆଁ ଲୋକେ ସବୁ                    ଜମା ହେଲେ ଆସି
ଲିଭାଇ ଦେବାକୁ ନିଆଁ,
ଶାଗର ବିଳାପ                    ନ ଶୁଣିଲେ ତାଙ୍କୁ
କେହି ନ ହୋଇଲେ ସାହା ।

ଏଣେ ଆମ କାନ୍ଦ  ତେଣେ ଶଶ ଡାକ
ପଡ଼ିଲା ପଡ଼ୋଶୀ କାନେ,
ସମ୍ଭାଳି ନ ପାରି  ବିକଳ ତାଙ୍କର
ଡେଇଁଲା ପ୍ରାଚୀର କଣେ ।

ଶଶ ପଞ୍ଜୁରୀକି  ଟେକିଆଣି ନିଜେ
ଦାଣ୍ଡକୁ ପଡ଼ିଲା ଡେଇଁ,
ପଡ଼ିଗଲା ନିଆଁ  ଆପଣା ପିଠିରେ
ଡାକିଲେ ହାଉଳି ଖାଇ ।

ଶଶ ରକ୍ଷା ହେଲା  ଆମର ବିହ୍ୱଳ
ଆନନ୍ଦରେ ଲୁହଧାର,
ବାପା ଧାଇଁଯାଇ  ମଲମ ବୋଳିଦେଲେ
ଫୋଟକାରେ ପଡ଼ୋଶୀର ।

ପ୍ରଶ୍ନ—୧ । ଶଶକୁ କାହିଁକି ସମସ୍ତେ ଭଲ ପାଉଥିଲେ ?

୨ । ନିଆଁରୁ ଶଶଟି କିପରି ରକ୍ଷା ପାଇଲା ?

୩ । କୋହ, ସାନ୍ତ୍ୱନା, ବିହ୍ୱଳ, ବିଳାପ, ପଡ଼ୋଶୀ—ଏଗୁଡ଼ିକୁ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଠନ କର ।

୪ । କୌଣସି ଜାଗା ପୋଡ଼ିଗଲେ ତୁମେ କଣ କଲେ ଫୋଟକା ହେବ ନାହିଁ ବା ବିଶେଷ କଷ୍ଟ ହେବ ନାହିଁ ?

# ଚୋରର ପ୍ରତିଜ୍ଞା

ଗୋଟିଏ ଗାଁରେ ନଅଣ୍ଣା ବୁଢ଼ୀଟିଏ ଥାଏ । ସେ କେତୋଟି ଗାଈ ପାଳିଥାଏ । ଗାଈଗୁଡ଼ିକ ଯାହା ଦୁଧ ଦିଅନ୍ତି, ତାକୁ ବିକି ସେ ଗୁଜୁରାଣ ମେଣ୍ଟାଏ । ତାର କୁଡ଼ିଆ ଘରଟି ଦରଭଙ୍ଗା । ଛପର ହୋଇପାରି ନ ଥିବାରୁ ଘର ଭିତରେ ପାଣି ପଡ଼େ ।

ଦିନେ ଶୀତ ରାତିରେ ବୁଢ଼ୀଟି ଖାଇସାରି ଠାକୁରଙ୍କୁ ପ୍ରାର୍ଥନା କଲା, "ହେ ଭଗବାନ୍, ମୁଁ ତ ଏବେ ଶୋଇବାକୁ ଯାଉଛି, ତୁମେ ମତେ ଲମ୍ବାଗୋଡ଼ିଆ ଆକ୍ରମଣରୁ ରକ୍ଷା କରିବ ।"

ଏତିକି କହି ସେ ଶୋଇବାକୁ ଗଲା । ସେହି ଘରକୁ ଲାଗି ତା ଗୁହାଳ ଘର । ଦଇବ ଯୋଗକୁ ଗୁହାଳ ଘର ପାଖେ ସେତିକି-ବେଳେ ଗୋଟିଏ ଚୋର ବସିଥାଏ । ବୁଢ଼ୀ ଶୋଇପଡ଼ିଲେ ସେ ତାର ଗାଈଟିଏ ଚୋରାଇ ନେବ ବୋଲି ମନେ ମନେ ପାଞ୍ଚୁଥାଏ । ଗୋଟିଏ ବାଘ ମଧ୍ୟ ଗୁହାଳରେ ସେହି ସମୟରେ ଅନ୍ଧାରରେ ଲୁଚିଥାଏ । ବୁଢ଼ୀ ଶୋଇପଡ଼ିଲେ ଗାଈଟିଏ ମାରି ଖାଇବା ତା'ର ଇଚ୍ଛା । ବୁଢ଼ୀ ଯାହା ଠାକୁରଙ୍କ ନିକଟରେ ପ୍ରାର୍ଥନା କଲା ଦୁହେଁଯାକ ତାହା ଶୁଣି ପାରିଲେ, ମାତ୍ର ଲମ୍ବାଗୋଡ଼ିଆଟି କିଏ ତାହା ବୁଝି ପାରିଲେ ନାହିଁ । ଉଭୟେ ଭାବିଲେ, ଲମ୍ବାଗୋଡ଼ିଆ ବୋଧହୁଏ କୌଣସି ଭୀଷଣ ଜନ୍ତୁ ।

କିଛି ସମୟ ପରେ ବୁଢ଼ୀ ଶୋଇପଡ଼ି ଘୁଙ୍ଗୁଡ଼ି ମାରିଲା । ଏଥର ଚୋର ଗୁହାଳ ଘରେ ପଶିଲା । କଟିକଟିଆ ଅନ୍ଧାରରେ ଚୋର ବା କିପରି ଭଲ ଗାଈଟିଏ ବାଛିବ ? ସେ ଭାବିଲା, ଲାଙ୍ଗୁଡ଼ରେ ହାତ ପକାଇବା ମାତ୍ରେ ଯେଉଁ ଗାଈ ବେଶୀ ଡେଇଁବ ସେଇ ଗାଈଟି ସବୁଠାରୁ ଭଲ । ଏପରି ଭାବି ସେ ଗାଈମାନଙ୍କ ଲାଙ୍ଗୁଡ଼ ଛୁଇଁବାକୁ ଆରମ୍ଭ କଲା ।

ହଠାତ୍ ତାର ହାତ ସେଇ ବାଘ ଲାଙ୍ଗୁଡ଼ରେ ପଡ଼ିଗଲା । ବାଘ ଚମକି ଡେଇଁ ପଡ଼ିବାରୁ ଶ୍ୟେର ଭାବିଲା, ଏଇଟା ଘୋଡ଼ାଠାରୁ ଭଲ ଗାଈ, ଏହାକୁ ନେବା ଉଚିତ । ତେଣୁ ତାକୁ ଟାଣି ଟାଣି ବାହାରକୁ ନେବ ଭାବି ସେ ତା' ଲାଙ୍ଗୁଡ଼କୁ ହାତରେ ଗୁଡ଼ାଇବାକୁ ଆରମ୍ଭ କଲା ।

ବାଘ ଶ୍ୟେରକୁ ବୁଢ଼ୀ କହୁଥିବା 'ଲମ୍ବାଗୋଡ଼ିଆ' ଭାବି ଆଉ ଥରେ ଡେଇଁଲେ । ଶ୍ୟେର ଠିକ୍ କଲା, ଏଇ ଗାଈଟା ଭଲ ହେଲେ ବି ବଡ଼ ଦୁଷ୍ଟ । ଏହା ଉପରେ ନ ବସିଲେ ସିଧା କରି ହେବ ନାହିଁ । ଏହାପରେ ଠିକ୍ କରି ସେ ଯେମିତି ବାଘ ଉପରେ ବସିଛି, 'ଲମ୍ବାଗୋଡ଼ିଆ' ମତେ ଧରିଲା ଭାବି ବାଘ ଭୟରେ ଧାଇଁବାକୁ ଲାଗିଲା ।

ବାଘ ଦୌଡ଼ିବାର ଦେଖି ଅନ୍ଧାରରେ ଶ୍ୟେରର ଦୃଢ଼ ବିଶ୍ୱାସ ହେଲା, ଏଇଟା ଗାଈ ନୁହେଁ, ନିଶ୍ଚୟ ବୁଢ଼ୀ କହୁଥିବା ଲମ୍ବା-ଗୋଡ଼ିଆ । ଏହାପରେ ଶ୍ୟେର ଓ ବାଘ ଦୁହେଁ ପରସ୍ପରକୁ ଲମ୍ବାଗୋଡ଼ିଆ ଭାବି ଭୟରେ ଅଧାପ୍ରାଣ ।

ଶ୍ୟେରକୁ ପିଠିରେ ବସାଇ ବାଘ ବଣ ଭିତରକୁ ପଳାଇଲା ବେଳକୁ ଶ୍ୟେର ବାଘ ଗଳାକୁ ଦୁଇ ହାତରେ ଖୁବ୍ ଜୋରରେ ଚିପିଦେଲା । ଏଥର ବାଘ ଭାବିଲା, ଏଇଟା ତ ଲମ୍ବାଗୋଡ଼ିଆ ନୁହେଁ, ଇଏ ଗୋଟିଏ ତଣ୍ଟି ଚପା । ତେଣୁ ଭୟରେ ଜୋରରେ ଧାଇଁବାକୁ ଲାଗିଲା ।

ତଣ୍ଟି ଚପିଲେ ବି ବାଘକୁ ଅଟକେଇ ନ ପାରିବାରୁ ଶ୍ୟେର ଆଉ ଥରେ ବାଘ ଲାଙ୍ଗୁଡ଼କୁ ଧରିଲା । ଲାଙ୍ଗୁଡ଼ରେ ଆଉ ଥରେ ହାତ ବାଜିଯିବାରୁ ବାଘ ଆହୁରି ଅଧିକ ବେଗରେ ଦୌଡ଼ିଲା । ବାଘ ଏତେ ଶୀଘ୍ର ଦୌଡ଼ିଲା ଯେ, ଶ୍ୟେର ତା ପିଠି ଉପରେ ଦମ୍ଭ ହୋଇ

ବୀନ ପ୍ରାୟ ତଳକୁ ଖସିପଡ଼ିଲା । ବାଘ ତ ପଳାଇଲା, ମାତ୍ର ସେ ତ ତା' ଲାଙ୍ଗୁଡ଼କୁ ଏପରି ଶକ୍ତ କରି ଧରିଥିଲା ଯେ, ସେଇଟି ଛିଡ଼ିଯାଇ ତା' ହାତରେ ରହିଗଲା ।

ବାଘ ଦୌଡ଼ି ଦୌଡ଼ି କିଛି ସମୟ ପରେ ବଣରେ ଲୁଚିଗଲା । ପରେ ଥିର ହୋଇ ସେ ଭାବି ଭାବି ସ୍ଥିର କଲା—ସେ ଯା' ପିଠିରେ ସେ ବସିଥିଲା, ସେଇଟା ତଣ୍ଟି ଚିପା ନୁହେଁ 'ଲାଙ୍ଗୁଡ଼ିଖଣା' ।

ଏଣେ ଟେଣ୍ଟେଇ ମଧ୍ୟ ନିଜ ହାତରେ ରହିଯାଇଥିବା ଲାଙ୍ଗୁଡ଼ିଟିକୁ ବାଘ ଲାଙ୍ଗୁଡ଼ ବୋଲି ଚିହ୍ନି ପାରି ଭୟରେ ଥରିଲା । ରାତି ପାହିବାକୁ ଆହୁରି ଅନେକ ଡେରି । ଅନ୍ଧାରରେ ସେ ବା କଣ କରିବ ? ବାଘ ତ ତାକୁ ଖୋଜି ଖୋଜି ଆସି ଖାଇଦେବ । ଶେଷରେ ସେ ପାଖରେ ଥିବା ଗୋଟିଏ ଆମ୍ବଗଛ ଉପରକୁ ଚଢ଼ି ସେଇଠି ରାତିଟା କଟାଇଦେବାକୁ ସ୍ଥିର କଲା ।

ଏଣେ ବାଘ ଯାଇ ତାର ସାଙ୍ଗ ଭାଇମାନଙ୍କୁ ନିଜ ଦୁଃଖର କାହାଣୀ କହିଲା । ସବୁ ବାଘ ବସି ସେ କଥାଟିର ବିଚାର କଲେ । ସେମାନେ ବଣର ରାଜା; ତାଙ୍କ ଭାଇ ଭିତରୁ ଜଣକୁ ଲାଙ୍ଗୁଡ଼ିଖଣାଟା ଏମିତି ଦୁରବସ୍ଥା କରିବା ବଡ଼ ଲଜ୍ଜାର କଥା । ସାରା ବାଘଜାତି ପାଇଁ ଏହା ଅପମାନ ଓ କଳଙ୍କ । ଏହାର ପ୍ରତିକାର କରିବାକୁ ହିଁ ହେବ । ତା' ନହେଲେ ସେମାନଙ୍କୁ ବଣର ରାଜା ବୋଲି ଆଉ କିଏ କାହିଁକି ମାନିବ ? ସେମାନେ ସମସ୍ତେ ବିଳମ୍ବ ନ କରି ଲାଙ୍ଗୁଡ଼ିଖଣାକୁ ଶାସ୍ତି ଦେବା ଲାଗି ବାହାରି ପଡ଼ିଲେ ।

ବଣଟା ସାରା ସେଇ ପ୍ରାଣୀଟାକୁ ଖୋଜି ଖୋଜି ସେମାନେ ଥକିଗଲେ, ମାତ୍ର କାହିଁ ସେ ଲାଙ୍ଗୁଡ଼ିଖଣା ! ଶେଷରେ ଗୋଟିଏ ବାଘ ସେହି ଆମ୍ବଗଛ ଉପରେ ଲାଙ୍ଗୁଡ଼ିଖଣାକୁ ଆରାମରେ ବସିଥିବାର ଦେଖି ଖୁସିରେ ହୁରି ପକାଇଲା, 'ଏହିଇଟି ଲାଙ୍ଗୁଡ଼ିଖଣା' ।

ବାଘ ମଣ୍ଡଳରେ ଚଞ୍ଚଳ ପଡ଼ିଗଲା—କେମିତି ଲଙ୍ଗୁଡ଼ି-ଟଣାକୁ ସେମାନେ ଧରିବେ ? ସବୁଙ୍କ ହାତଙ୍କ ଉପାୟ ମଧ୍ୟ ସ୍ଥିର ହୋଇଗଲା—ଗୋଟାଏ ବାଘ ଉପରେ ଆଉ ଗୋଟିଏ ବାଘ,



ତା' ଉପରେ ଆଉ ଗୋଟାଏ, ଏହିପରେ ଉଠି ସେମାନେ ଲଙ୍ଗୁଡ଼ିଟଣାର ଅତି ନିକଟରେ ପହଞ୍ଚିଲେ ।

ଡର ଧରିଲା—ଏଥର ମଲି, ଆଉ ରକ୍ଷାପାଇବାର ଉପାୟ ନାହିଁ । ଏହି କରୁବେଳେ ତାକୁ ଗୋଟାଏ ଭଲ ବୁଦ୍ଧି ଦେଖାଗଲା । ସେ

ଦେଖିଲା, ସେହି ଲଙ୍ଗୁଡ଼ଖଣ୍ଡି ବାଘଟି ସମସ୍ତଙ୍କ ଆଗରେ ଠିଆ ହୋଇଛି । ସେ ଖୁବ୍ ରାଗି ତାକୁ ଧମକେଇ କହିଲା—ହଇରେ ହେ ଲାଙ୍ଗୁଡ଼ଖଣ୍ଡି, ତୁ ପୁଣି ଆସିଲୁ ? ରହ, ଏଥର ତୋର ବାଘପଣିଆ ଛଡ଼ାଇଦେବି ।'

ଲାଙ୍ଗୁଡ଼ଖଣ୍ଡି ବାଘ ଭାବିଲା—ଲାଙ୍ଗୁଡ଼ଖଣ୍ଡା ବୋଧହୁଏ ଏଥର ମଧ୍ୟ ସମସ୍ତଙ୍କୁ ଛାଡ଼ି ମତେଇ ଏକା ଧରିବ । ଏହା ଭାବି ସେ ପ୍ରାଣଭୟରେ ଉଠି ପଡ଼ି ଧାଇଁଲା । ସବୁଆଡ଼ ବାଘଟି ଖସିଯିବାରୁ ଗୋଟିକ ପରେ ଗୋଟିଏ ଏହିପରି ସବୁଗୁଡ଼ିକ ବାଘ ଠେଲାପଡ଼ିଲେ । କଣ ହେଲା ବୋଲି କିଛି ବୁଝି ନ ପାରି ସମସ୍ତେ ହାଉଳି ଖାଇଗଲେ । ଶେଷରେ ଲାଙ୍ଗୁଡ଼ଖଣ୍ଡା ସେମାନଙ୍କୁ ଧରିଲା ଭାବି ପ୍ରାଣ ବିକଳରେ ବଣ ଭିତରକୁ ଧାଇଁଲେ ।

ସକାଳ ହେବାଯାଏ ଚୋର ସେହି ଗଛ ଉପରେ ବସିରହିଲା । ସକାଳୁ ଘରକୁ ଫେରି ସେ ପ୍ରତିଜ୍ଞା କଲା—ଆଉ ଦିନେ ସେ ଚୋରି କରିବ ନାହିଁ ।

ପ୍ରଶ୍ନ—୧ । ଚୋର କାହିଁକି ବାଘକୁ ଘରକୁ ନେବ ବୋଲି ଭାବିଲା ?
୨ । ସେ କିପରି ବାଘ ହାବୁଡ଼ରୁ ରକ୍ଷା ପାଇଲା ?
୩ । ନିଆଶ୍ରା, ଗୁଜୁରାଣ, ପ୍ରତିକାର, ଆକ୍ରମଣ, ଅଧାପ୍ରାଣ, ଅପମାନ, ଦଇବଯୋଗ, ପରସ୍ପର, କଳଙ୍କ, ପ୍ରାଣବିକଳ, ହାଉଳି ଖାଇଗଲେ, ଠେଲିପଡ଼ିଲେ—ଏଗୁଡ଼ିକୁ ଲଗାଇ ଗୋଟିଏ ଗୋଟିଏ ବାକ୍ୟ ଗଠନ କର ।

# ରାଜା ଓ ବୁଢ଼ୀ

ଏକ ଦେଶେ ଥିଲେ ଜଣେ
ରାଜା ବଡ଼ ପ୍ରତାପୀ
ନାଆଁ ଶୁଣି ଶତ୍ରୁ ଯେତେ
ହେଉଥିଲେ ସନ୍ତାପି ।

ଥିଲା ତାଙ୍କ ମଣି ମୋତି
ମୁକୁତାର ମହଲ,
ରାଇଜରେ ପଡ଼ୁଥିଲା
ସବୁବେଳେ ଚହଲ ।

ଦରବାରେ ଦିନେ ରାଜା
କରୁଥିଲେ ବିଚାର,
ଏ ସମୟେ ଆସି ଏକ
ବୁଢ଼ୀ କଲା ଜୁହାର ।

ନୁଡ଼ୁନୁଡ଼ୁ ଅଣ୍ଟା ତାର
ଧୁଡ଼ୁଧୁଡ଼ୁ ଚମ ତା
ଖୁଁ ଖୁଁ ଖାସ ଯେଲ
ହେଉଥାଏ ଆକଟା ।

ଗୋଟି ଗୋଟି ବାଳ ଧଳା
ଆଗି ଥାଏ କୋଠରେ,
ବସ୍ତ୍ର ତା, ହେବ ପରା
ଅଣୀ ଆଉ ପଟରେ

ଦରବାରେ ବସିଥିଲେ,
ରାଜା ନିଜେ ଦେଖିଲେ
ତହୁଁ ବୁଢୀ ଦନ୍ତ ଧରି
ଉଚ୍ଚ ସ୍ୱରେ କହିଲା—



"ତୁମେ ଯଦି ରାଜା ଅଟ
କି ରାଇଜ ବୁଝୁଛ
ରାଇଜର ସୀମା ପାଖେ
କି ଘଟୁଛି ଦେଖୁଛ ?
ପରଦେଶୁଁ ଦସ୍ୟୁ ଆସି
ଲୁଟି ନିଏ ସମ୍ପତ୍ତି,
ତୁମ୍ଭେ ରାଜା ମୁହିଁ ପ୍ରଜା
ଘୁଞ୍ଚାଅ ମୋ ବିପତ୍ତି ।"

ଏହା ବୁଝିଲେ ରାଜା ତହୁଁ
ରାଗେ ଜଳି କହିଲେ,
"ରାଜ୍ୟ ସୀମା ବହୁ ଦୂର
କହ, ଆଗେ ପଚାରିଲେ—

ଏ ଗାଁ ଗାଁରୁ ଚୋରା ସମ୍ପତ୍ତି
ଦସ୍ୟୁ ଲୁଟି ନଅଇ,
ଏଥିପାଇଁ ସଇନ ମୋ
ଦେବି ଦୂରେ ପଠାଇ ?"

ବୁଢ଼ୀ ତହୁଁ ମୁହଁ ମୋଡ଼ି
ରାଜା ଆଗେ କହଇ,
"ବଡ଼ ବୋଲି ହେଉଁ ରାଜା
ଦୁଃଖ ନାହିଁ ବୁଝଇ ।

ସେହି ରାଜା କାହିଁ ପାଇଁ
ଏତେ ରାଜ୍ୟ ରଖିବ ?
ଛାଡ଼ିଦେଉ ସେ ଖଣ୍ଡିକ
ଆନ ରାଜା ବୁଝିବ ।"

ବୁଢ଼ୀଟିର କଥା ଶୁଣି
ରାଜା ମୂକ ହୋଇଲେ,
କ୍ଷଣ ପରେ କସ ଭାବ
ମନ୍ତ୍ରୀଙ୍କୁ ସେ କହିଲେ—

"ଘାଟଘାଣ୍ଟ ପରେ ଏକ୍ସ
ବୁଡ଼ୀକୁ ଦେ ବସାଇ,
ତା' ସମ୍ପତ୍ତି ରକ୍ଷା ପାଇଁ
ସୈନ୍ୟ ଦିଅ ପଠାଇ ।"

ଘାଟ ଦ୍ୱାଣ୍ଟ ପରେ ବୁଢ଼ୀ
ଆସେ ଥାଟ ଚଳାଇ,
ଦୂରୁଁ ଦେଖି ଦସ୍ୟୁ ଦଳ
ଗଲେ କାହିଁ ପଳାଇ ।

ତରିଲା ନ ବୁଢ଼ୀ ଭନେ
ସ୍ୱତ କଥା କହିଲା,
ବୁଝିଗଲା ରାଜା ମନ,
ସନମାନ ପାଇଲା ।

ପ୍ରଶ୍ନ— ୧ । ବୁଢ଼ୀର ରୂପ କପରି ଥିଲା ? ସେ ରାଜାଙ୍କୁ ପ୍ରଥମେ କ'ଣ କହିଲା ?
୨ । ରାଜା ଆଗ ବୁଢ଼ୀ କଥାରେ କାହିଁକି ରାଗିଲେ ? ପରେ ନିଜର ଭୁଲ ବୁଝିପାରି କ'ଣ କଲେ ?
୩ । ଦସ୍ୟୁ, ସନ୍ତାପ, ଥାଟ, ସମ୍ପତ୍ତି, ଦମ୍ଭ, ପ୍ରତାପୀ, ସୀମା, ଦରବାର, ମୂକ, ବିପତ୍ତି, ମହଲ, ଚଦ୍ଦଳ,— ଏଗୁଡ଼ିକ ଲଗାଇ ବାକ୍ୟ ଗଢ଼ ।
୪ । ସନମାନ, ରାଇଜ, କୋଟରେ, ସଇନ, ମୂକୁତା— ଏଗୁଡ଼ିକ ଗଦ୍ୟରେ କପରି ଲେଖାହେବ ?

# ସୁରେଶର ମୁକ୍ତାଲଭ

ଗୋଟିଏ ଗ୍ରାମରେ ସୁରେଶ ନାମରେ ତନ୍ତୀଟିଏ ଥିଲା । ସେ ଖୁବ୍ ସୁନ୍ଦର ଲୁଗା, ଶାଢ଼ୀ ଓ ଗାମୁଛା ବୁଣିପାରୁଥିଲା । ସେହି ଗ୍ରାମରେ ଥିବା ତା'ର ଅନ୍ୟାନ୍ୟ ଭାଇମାନଙ୍କ ମଧ୍ୟରୁ କେହି ହେଲେ ତା'ପରି ଲୁଗା ବୁଣିପାରୁ ନଥିଲେ ।

ତେବେ ସେ ଗ୍ରାମରେ ସୁରେଶ ପରି ବୋକା ଆଉ କେହି ନ ଥିଲେ । ସେ ହାଟରେ ଲୁଗାଗୁଡ଼ିକ ଅତି ଶସ୍ତାରେ ବିକି କରେ । ଯିଏ ଯାହା ଯାଚିଲେ ମଧ୍ୟ ସୁରେଶ ତାହା ରଖି ସଙ୍ଗେ ସଙ୍ଗେ ଲୁଗା ବା ଶାଢ଼ୀଟିକୁ ଦେଇଦିଏ ।

ସୁରେଶର ଏପରି ବୋକାମି ଦେଖି ତା' ସ୍ତ୍ରୀ ମନରେ ଖୁବ୍ ଦୁଃଖ ହେଲା । ସେ ଏଥିପାଇଁ ସ୍ୱାମୀକୁ ବହୁତ ବୁଝେଇଲା; କିନ୍ତୁ ସୁରେଶ ସେଥିରେ ଆଦୌ କାନ ଦେଲା ନାହିଁ । ତା'ର ବୋକାମୀ ଦିନକୁ ଦିନ ବଢ଼ିଲା ସିନା କମିଲା ନାହିଁ ।

ଶେଷରେ ଏହି କାରଣରୁ ସୁରେଶକୁ ତା' ସ୍ତ୍ରୀ ଆଉ ହାଟ ବା ବଜାରକୁ ମୋଟେ ପଠାଇଲା ନାହିଁ । ନିଜେ ସବୁବେଳେ ହାଟକୁ ଯାଇ ଲୁଗାପଟା ବିକି କଲା ।

ଏହିପରି କିଛିଦିନ ଚାଲିପରେ ଥରେ ସୁରେଶ ସ୍ତ୍ରୀକୁ ଜ୍ୱର ହେବାରୁ ସେ ଆଉ ହାଟକୁ ଯାଇପାରିଲା ନାହିଁ । ଦିନେ ହାଟବାରରେ ସେ ସ୍ୱାମୀକୁ ପାଖକୁ ଡାକି କହିଲା, "ଦେଖ, ଏ ଶାଢ଼ୀଗୁଡ଼ିକ ନେଇ ଆଜି ହାଟକୁ ଯାଅ । ସେଠାରେ ଏଗୁଡ଼ିକୁ ଖୁବ୍ ସାବଧାନରେ ବିକିବ । ଏତିକି ସତୁରି ଟଙ୍କାରୁ ବେଶି ହେବ ପଛେ କମିବ ନାହିଁ । ବିକି ସାରି ସବୁତକ ଟଙ୍କା ନେଇ ଘରକୁ ଫେରି ଆସିବ !"

ସୁରେଶ ଗାଡ଼ିଟିକ ନେଇ ହାଟକୁ ଗଲା । ସ୍ତ୍ରୀର କଥା ଅନୁଯାୟୀ ସେତାକୁ ସତୁରି ଟଙ୍କାରେ ବିକିଲା ଏବଂ ଠିକ୍ ସମୟରେ ଘରକୁ ଫେରିବାକୁ ଲାଗିଲା ।

ସୁରେଶ ଫେରିବା ବେଳେ ଦେଖିଲା ଯେ, ଜଣେ ଲୋକ ଗୋଟିଏ ଘୋଡ଼ାରେ ବସି ଆସୁଛି । ଲୋକଟି ଯେମିତି ସୁରେଶ ପାଖରେ ପହଞ୍ଚିଲା, ସାଙ୍ଗେ ସାଙ୍ଗେ ଘୋଡ଼ାରୁ ଓହ୍ଲାଇ କହିଲା, "ଭାଇ ! ନମସ୍କାର, ତୁମେ ମୋତେ ଚିହ୍ନି ପାରୁଛ ?



ସୁରେଶ ଟିକିଏ ହସହସ ହୋଇ କହିଲା, "ନା' ମୁଁ ତ ତୁମକୁ ଚିହ୍ନି ପାରୁ ନାହିଁ । ଘୋଡ଼ାବାଲା ସୁରେଶର ହସିବା ଢଙ୍ଗରୁ ତାକୁ ବୋକା ବୋଲି ଠିକ୍ ଠଉରେଇ ନେଲା । ପରେ କହିଲା, "ମୁଁ ଏ ଘୋଡ଼ାଟିକୁ ବିକିବାକୁ ଆଣିଛି । ଏ ଘୋଡ଼ାଟି ଯେପରି ଚାଲାକ, ସେହିପରି ମଧ୍ୟ ବଳୁଆ । ତୁମେ ଏହାକୁ କିଣି ନେବ କି ?"

ସୁରେଶ ଭାବିଲା, ମୁଁ ଏ ଘୋଡ଼ାଟିକୁ ନେଲେ ମୋର ସ୍ତ୍ରୀ ନିଶ୍ଚୟ ଖୁସି ହେବ ଏବଂ ମୋତେ ଆଉ ନିନ୍ଦା କରିବ ନାହିଁ । ଏହା ଭାବି ସୁରେଶ ଲୋକଟିକୁ କହିଲା, "ଏ ଘୋଡ଼ାର ଦାମ୍ ତ ବହୁତ ବେଶି ହେବ । ବର୍ତ୍ତମାନ ମୋ ପାଖରେ ମୋଟେ ସତୁରି ଟଙ୍କା ଅଛି । ତୁମେ କ'ଣ ଏତିକି ଟଙ୍କା ନେଇ ଘୋଡ଼ାଟିକୁ ଦେବ ।"

ସୁରେଶ କଥା ଶୁଣି ଘୋଡ଼ାବାଲା ଆତୁର ଗୁଳାକ ହୋଇ କହିଲା, "ଘୋଡ଼ାର ଦାମ୍ ତ ବହୁତ ବେଶୀ, ତେବେ ଆଜି ମୋତେ ଯେ ସତୁରି ଟଙ୍କା ଦେଇଥାଅ । ଆଉ ବାକି ମୋତେ ଆର ହାଟପାଳି ଦିନ ଏହିଠାରେ ଦେବ ।" ଏପରି କହି ସେ ସୁରେଶଠାରୁ ସତୁରିକ ଟଙ୍କା ନେଇ ଘୋଡ଼ାଟିକୁ ଦେଇ ଚାଲିଗଲା ।

ସୁରେଶ ଘୋଡ଼ା ଉପରେ ବସି ଆନନ୍ଦରେ ଘରଆଡ଼କୁ ବାହାରିଲା । ଘୋଡ଼ାରେ ବସିଲା ସିନା, ଲାଭ କିଛି ହେଲା ନାହିଁ । ଘୋଡ଼ାଟି ବୁଢ଼ା ହୋଇଯାଇଥିବାରୁ ବାଟରେ ମୋଟେ ଚାଲିପାରିଲା ନାହିଁ । ମଝିରେ ମଝିରେ ପଡ଼ିଯିବାକୁ ଲାଗିଲା । ଏମିତି ବାଟରେ ହଇରାଣ ହୋଇ ସୁରେଶ ଘୋଡ଼ା ଉପରେ ବହୁତ ରାଗିଲା । ହେଲେ ଉପାୟ କଣ ? ଶେଷରେ ଧୀରେ ଧୀରେ ଘୋଡ଼ାକୁ ଚଲାଇ ଭିଡ଼ି ଭିଡ଼ି ଆଗକୁ ଚାଲିଲା ।

କିଛିଦୂର ଗଲା ପରେ ସୁରେଶ ଦେଖିଲା, ଜଣେ ଲୋକ ଗୋଟିଏ ଛେଳି ଧରି ଆସୁଛି । ସୁରେଶ ଭାବିଲା—ମୁଁ ଯଦି ଏ ଘୋଡ଼ା ବଦଳରେ ଛେଳିଟିକୁ ପାଏ, ତେବେ ଖୁବ୍ ଭଲ ହେବ ।

ଏହା ଭାବି ସେ ଛେଳିବାଲାକୁ ପଚାରିଲା, "ତୁମେ ଏ ଘୋଡ଼ାଟିକୁ ନେଇ ମୋତେ ତୁମ ଛେଳିଟିକୁ ଦେବ କି ?" ଛେଳି ମାଲିକ ସୁରେଶ କଥାରେ ବଡ଼ ଖୁସି ହୋଇ ସାଙ୍ଗେ ସାଙ୍ଗେ ଛେଳି ବଦଳରେ ଘୋଡ଼ାଟି ନେଇ ତା ବାଟେ ବାଟେ ପଳାଇଲା ।

ସୁରେଶ ଛେଳି ପାଇଲା ସିନା ତାହା ମଧ୍ୟ ତାକୁ ହଇରାଣ କଲା । ଛେଳି ଘୋଡ଼ା ଅପେକ୍ଷା ଅଧିକ ଧୀରେ ଧୀରେ ଚାଲିଲା ଏବଂ ସୁରେଶଙ୍କୁ ବାଟରେ ବହୁତ କଷ୍ଟ ଦେଲା । ଏଥିରେ ସୁରେଶ ଭିତରର ବଡ଼ ଦୁଃଖ ।

ସେତିକିବେଳେ ଗୋଟିଏ ଲୋକ ବାଇଗଣ ବୋଝେ ମୁଣ୍ଡେଇ ଆସୁଥିଲା । ସୁରେଶଙ୍କୁ ବାଇଗଣ ଭଲ ଲାଗେ । ସେ ସଙ୍ଗେ ସଙ୍ଗେ ଲୋକଟି ପାଖକୁ ଯାଇ ପଚାରିଲା, "ତୁମେ ଏ ଛେଳିଟିକୁ ନେଇ ମୋତେ ତୁମ ବାଇଗଣ ବୋଝକ ଦେବ କି ? ଲୋକଟି ଆନନ୍ଦରେ ରାଜି ହୋଇଗଲା ଏବଂ ବାଇଗଣ ବଦଳରେ ଛେଳିଟିକୁ ନେଇ ସେଠାରୁ ଚାଲିଗଲା ।"

ସୁରେଶ ବାଇଗଣଡକ ମୁଣ୍ଡେଇ ଘରକୁ ଚାଲିଲା । କିନ୍ତୁ ବାଟ ଚାଲିବାରେ ତାକୁ ବଡ଼ ହାଲିଆ ଲାଗିଲା । ଭାବିଲା, ଏ ବାଇଗଣ ବୋଝଟା ଘୋଡ଼ା ଓ ଛେଳି ଅପେକ୍ଷା ମୋତେ ବେଶି କଷ୍ଟ ଦେଲାଣି । ମୋ ଘର ତ ଆହୁରି ଅନେକ ବାଟ ରହିଲା, ମୁଁ ଏହା ଘରକୁ ନେଇ ଫେରିବି କିପରି ? ଏହିପରି ଭାବି ଭାବି ସୁରେଶ ସେଇଠାରେ ରାସ୍ତାରେ ଗୋଟିଏ କଡ଼ରେ ବସି ରହିଲା ।

କିଛି ସମୟ ପରେ ସେହିବାଟେ ଜଣେ କେଉଟ ଗୋଟିଏ ମାଛ ଧରି ଆସିଲା । ସୁରେଶ ସଙ୍ଗେ ସଙ୍ଗେ ତାକୁ ପଚାରିଲା, "ହେ କେଉଟ ଭାଇ, ତୁମେ ଏହି ବାଇଗଣଡକ ନେଇ ମୋତେ ସେ ମାଛଟିକ ଦେବ କି ?" କେଉଟ ଦେଖିଲା, ଏଥିରେ ତାର କିଛି କ୍ଷତି ନାହିଁ । ସେ ଆନନ୍ଦରେ ମାଛ ବଦଳରେ ବାଇଗଣଡକ ନେଇ ଚାଲିଗଲା ।

ବର୍ତ୍ତମାନ ସୁରେଶର ଖୁସି କହିଲେ ନ ସରେ । ସେ ମାଛଟିକୁ ନେଇ ଆନନ୍ଦରେ ଘରେ ପହଞ୍ଚିଲା । ଘରେ ତାର ସ୍ତ୍ରୀ ମାଛଟିକୁ ଦେଖି ପଚାରିଲା, "ଏ ମାଛ କେଉଁଠୁ ଆଣିଲ ?"

ସୁରେଶ ଉତ୍ତର ଦେଲା, "କିଣିକରି ଆଣିଲି ।"

ସ୍ତ୍ରୀ—କ'ଣ ଦେଇ କିଣିଲ ?

ସୁରେଶ – ବାଇଗଣ ଦେଇ ।

ସ୍ତ୍ରୀ—ବାଇଗଣ ଆଣିଲ କେଉଁଠୁ ?

ସୁରେଶ—ଛେଳି ଦେଇ ।

ସ୍ତ୍ରୀ – ଛେଳି ଆଣିଲ କେଉଁଠୁ?

ସୁରେଶ —ଘୋଡ଼ା ଦେଇ ।

ସ୍ତ୍ରୀ – ଘୋଡ଼ା ଆଣିଲ କେଉଁଠୁ ?

ଏଥର ସୁରେଶ ସ୍ତ୍ରୀକୁ ସବୁ କଥା ବୁଝାଇ କହିଦେଲା । ତାହା ଶୁଣି ସ୍ତ୍ରୀ ତାକୁ 'ବୋକା' କହି ବହୁତ ଗାଳିଦେଲା । ଗାଳି ଖାଇ ସୁରେଶ ମନ ଦୁଃଖରେ ରନ୍ଧଶାଳକୁ ଚାଲିଗଲା ।

ବର୍ତ୍ତମାନ ସୁରେଶର ସ୍ତ୍ରୀ ରାନ୍ଧିବ ବୋଲି ମାଛଟିକୁ କାଟିଲା । ସେ ଯେମିତି ମାଛଟିକୁ କାଟିଦେଲା; ହଠାତ୍ ଗୋଟିଏ ମୁକ୍ତା ତା ପେଟ ଭିତରୁ ଠଣ କରି ଖସିପଡ଼ିଲା । ସେହି ମୁକ୍ତାଟି ଖୁବ୍ ବଡ଼ ଏବଂ ତା'ର ତେଜରେ ଘର ପୂରିଉଠିଲା ।

ସଙ୍ଗେ ସଙ୍ଗେ ରନ୍ଧାଆଣି ମୁକ୍ତାଟି ନେଇ ସ୍ୱାମୀକୁ କହିଲା, "ଦେଖ, କେଡ଼େ ସୁନ୍ଦର ମୁକ୍ତାଟିଏ । ମୁଁ ଏହାକୁ ମାଛପେଟରୁ ବାହାର କରିଛି । ଏହା ବିକି ହୋଇଗଲେ ଆମକୁ ହଜାର ହଜାର ଟଙ୍କା ମିଳିବ ।"

ବର୍ତ୍ତମାନ ସୁରେଶର ମନ ଆନନ୍ଦରେ ନାଚି ଉଠିଲା । ସେ ଖୁସିରେ ପାଟିକରି ଉଠିଲା, "ହଁ, ହଁ, ମୁଁ ଏହା ଆଗରୁ ଜାଣିଥିଲି ପରା, ମୁଁ କ'ଣ ବୋକା ହୋଇଥିଲି କି ?

ପ୍ରଶ୍ନ—୧ । ସୁରେଶକୁ ପ୍ରଥମେ କିଏ ଠକିଲା ?

୨ । ସୁରେଶ କିପରି ବଡ଼଼ଲୋକ ହେଲା ?

---




ଆଜିର ପଢ଼ା ସରିଲା ଭାଇ,
ଚାଲ ବଗିଚା ଆଡ଼େ,
ପଥର ଝିଙ୍କ ଥିବ ଯେ ପଡ଼ି
ଫିଙ୍ଗିବା ଖତ ଗାଡ଼େ,
କୂଅରୁ କାଢ଼ି କାନ୍ଧରେ ଆଣି
କିଆରି ଭରି ଢାଳିବା ପାଣି
ଦେଖିବା ବସି ସବୁ ଜାଗାରେ
ଜଳ ଯେପରି ମାଡ଼େ,
ଆଜିର ପଢ଼ା ସରିଲା ଭାଇ
ଚାଲ ବଗିଚା ଆଡ଼େ ।
ଧରିବା କୋଡ଼, ହାଣିବା ମାଟି,
ହେବ କିଆରି ନୂଆ,
ଖତ ଅଜାଡ଼-ସଜାଡ଼ ଦେବା,
ପରିବା ହେବ ଥୁଆ,

ପୁରୁଣା ଶେଷ ହେବା ବେଳକୁ
ନୂଆ ଫଳ ଯେ ଥିବ ଡାଳକୁ
ଓହଳିଥିବ, ତୋଳିବା ସୁଖେ,
ନୋହିବା ଅଳସୁଆ,
ଧରିବା କୋଡ଼ି, ହାଣିବା ମାଟି,
ହେବ କିଆରି ନୂଆ ।
ବଗିଚା ଯାର ସରସ ହେବ
ପାଇବ ପୁରସ୍କାର,
ସେଥିକି ଗୁହାଁ ଆସରେ ଧାଇଁ
ଲାଗିବା ବାରମ୍ବାର ।
କୃଷି ବିଷୟ ପଢ଼ିବ ମାଥେ
ଅଙ୍ଗଚାଳନା ହେବ ତା' ସାଥେ,
ହେବା ନିରୋଗ ବଳୁଆ ଆମେ
ମିଳିବ ଉପକାର,
ବଗିଚା ଯାର ସରସ ହେବ
ପାଇବ ପୁରସ୍କାର ।

ପ୍ରଶ୍ନ—୧ । ସ୍କୁଲ ବଗିଚାରେ ଛାତ୍ରମାନେ କି କି କାର୍ଯ୍ୟ କରନ୍ତି ?
୨ । ବଗିଚାରେ ପୁରୁଣା ପଛକୁ ନୂଆ ପରିବା କପରି ଲାଗିବ ହେ ?
୩ । ସ୍କୁଲର ବଗିଚା ତିଆରି କରିବାଦ୍ୱାରା ପିଲାମାନେ କି କି ଉପକାର ପାଆନ୍ତି ?
୪ । 'କୃଷି ବିଷୟ ପଢ଼ିବ ମାଥେ' — ଏଥିରୁ କ'ଣ ବୁଝିଲ ?

# ନାରେ-ଗାଏ-ବାଟେ

ବହୁତ ଦିନ ତଳର କଥା । ମା'ଟିଏ ଓ ପୁଅଟିଏ କୌଣସି ଦେଶରେ ବାସ କରୁଥିଲେ । ପୁଅଟିର ନାମ ମନୁ । ସେମାନେ ବଡ଼ ଗରିବ । ଦିନେ ମନୁ ମା'କୁ କହିଲା, "ମା, ମୋ ସାଙ୍ଗ ବଳ୍ଲୁ ପାଇଁ ତାର ବାବା ରଙ୍ଗୀନ୍ ଖେଳନା ଆଣିଛନ୍ତି । ମୋ ବାପା କୁଆଡ଼େ ଯାଇଛନ୍ତି ? ସେ ଆସିଲେ ସିନା ମୋପାଇଁ ବାଜା ଆଣିବେ ।"

ମା ପୁଅର ମୁଣ୍ଡ ଆଉଁଷି କହିଲେ, "ତୋ ବାପା ଦୂରକୁ ଚାଲିଯାଇଛନ୍ତି । ସେ ବହୁତ ଦିନପରେ ସେଠାରୁ ଫେରିବେ !"

ମନୁ ମା କଥାରେ ବୁଝିଗଲା ସିନା, ମନେ ମନେ ଠିକ୍ କଲା ତାର ବାପା ଆଉ ଫେରିବେ ନାହିଁ ବା ତା'ପାଇଁ ବାଜା ଆଣିବେ ନାହିଁ । ସେଥିପାଇଁ ସେ ପଢ଼ିବା ସମୟ ଛଡ଼ା ସବୁ ସମୟରେ ମନଟି ମାରି ବସି ରହେ ।

ମନୁ ଧୀରେ ଧୀରେ ବଡ଼ ହେଲା । ଦିନେ ସେ ପଢ଼ିସାରି ଘରକୁ ଫେରିଆସିବାରୁ ତାର ମା' ତାକୁ କହିଲେ, "ଘରେ ଖାଇବାପାଇଁ କିଛି ନାହିଁ, ଖାଇବା କଣ ? ବଜାରରେ ତୁ ଆମ ଗାଈଟିକୁ ବିକି କରି ପଇସା ଆଣିଲେ ଏଣିକି ଘର ଚଳିବ ।"

ତା'ପରଦିନ ମନୁ ସକାଳୁ ଉଠି ଗାଈକୁ ନେଇ ବଜାରକୁ ଗଲା । ରାସ୍ତାରେ ଗୋଟିଏ ବୃଦ୍ଧ ସହିତ ତାହାର ଦେଖା ହେଲା । ଗାଈକୁ ଦେଖି ବୃଦ୍ଧର ଲୋଭ ବଳିଲା ଓ କିପରି ଗାଈଟିକୁ ନେବ ସେଥିପାଇଁ ଏକ ଉପାୟ ପାଞ୍ଚିଲା । ସେ ସାଙ୍ଗେ ସାଙ୍ଗେ ତାହା ପାଖରେ ଥିବା ଥଳିରୁ କେତେକ ବଣଫଳ ବାହାର କରି ହାତରେ ଧରିଲା । ସେହି ବଣଫଳଗୁଡ଼ିକ ଦେଖିବାକୁ ଖୁବ୍ ସୁନ୍ଦର ହୋଇ-ଥିବାରୁ ମନୁର ଫଳଗୁଡ଼ିକ ନେବାକୁ ଇଚ୍ଛା ହେଲା । ତେଣୁ ସେ ବୃଦ୍ଧକୁ ସେହି ଫଳ ମାଗିଲା ।

ଋଷୀ ତାକୁ କହିଲେ, "ତୋ ପାଖରେ ଯାହା ପଇସା ଅଛି ତାହା ଦେଲେ ମୁଁ ଫଳଗୁଡ଼ିକ ଦେବି ।"

ମନୁ ଦୁଃଖରେ କହିଲା, "ମୋ ପାଖରେ ତ ଗୋଟିଏ ହେଲେ ପଇସା ନାହିଁ ।"

ଏଥିରେ ଋଷୀ କହିଲେ, "ଯଦି ତୋ ପାଖରେ ପଇସା ନାହିଁ, ତାହାହେଲେ ତୁ ଗାଈଟିକୁ ଦେଇ ଫଳ ନେଇ ଯା" । ଫଳଗୁଡ଼ିକ ନେବାକୁ ମନୁର ଏତେ ମନ ହୋଇଥିଲା ଯେ ସେ ସଙ୍ଗେ ସଙ୍ଗେ ଗାଈଟିକୁ ଋଷୀକୁ ଦେଇ ତାଠାରୁ ଫଳ ନେଇ ଘରକୁ ଫେରିଲା ।

ଘର ଦରଜା ପାଖରେ ମନୁର ମା ଠିଆ ହୋଇ ଥିଲେ । ମନୁ ପହଞ୍ଚିଲାକ୍ଷଣି ସେ ତା'ଠାରୁ ଥଳିଟି ନେଇ ଦେଖିଲେ, ଥଳିରେ ଅନେକ ପ୍ରକାର ସୁନ୍ଦର ବଣଫଳ ଅଛି । ତାପରେ ସେ ଟଙ୍କା କେଉଁଠି ଅଛି ବୋଲି ପଚାରିବାରୁ ମନୁ ସବୁ ଘଟଣା କହିଗଲା । ତେଣୁ ତାର ମା ରାଗିଯାଇ ସେ ବଣଫଳଗୁଡ଼ିକୁ ଫୋପାଡ଼ିଦେଲେ ଓ ମନୁକୁ ବହୁତ ଗାଳିଦେଲେ । ସେଦିନ ରାତିରେ ମା'ପୁଅ ଦୁହେଁ କିଛି ନ ଖାଇ ଶୋଇଲେ ।

ତା' ପରଦିନ ସକାଳୁ ମନୁ ଦେଖିଲା ଯେ ତାଙ୍କ ଘର ସମ୍ମୁଖରେ ଗୋଟିଏ ବଡ଼ ଗଛ ଠିଆହୋଇଛି । ତାର ମା ଯେଉଁ ବଣଫଳଗୁଡ଼ିକ ଫୋପାଡ଼ି ଦେଇଥିଲେ, ତାହା ରାତିକ ଭିତରେ ଗୋଟିଏ ବଡ଼ ଗଛ ହୋଇଯାଇଛି । ମନୁ କଣ ଭାବି ତତ୍‌କ୍ଷଣାତ୍ ସେଇ ଗଛ ଉପରକୁ ଉଠିଗଲା । ଡାଳେ ଡାଳେ ଯାଇ ଶେଷରେ ଗୋଟିଏ ଅଦ୍ଭୁତ ଦେଶରେ ପହଞ୍ଚିଲା । ସେଠିବେଳକୁ ଖରାବେଳ । ସେ ସେଠାରେ ଗୋଟିଏ ବୁଢ଼ୀକୁ ଦେଖିଲା ।

ବୁଢ଼ୀ ମନୁକୁ କହିଲା, "ଅରେ ପୁଅ, ତୁ ଏଠାକୁ କାହିଁକି ଆସିଲୁ । ଏଠାରେ ଗୋଟିଏ ବଡ଼ ରାକ୍ଷସ ରହୁଛି । ସେ ତୋ ବାପକୁ

ମାଉ ତୁମର ଧନ ସମ୍ପତ୍ତି ସବୁ ନେଇ ଆସିଛୁ । ତୋତେ ଦେଖି ସେ ସଙ୍ଗେ ସଙ୍ଗେ ମାଡ଼ିପଡ଼ି ଖାଇଦେବେ । ତୋର ଯଦି ସାହସ ଅଛି, ତାହାହେଲେ ତୁ ଯେ ରାକ୍ଷସକୁ ମାରି ତୋ ଧନ ସମ୍ପତ୍ତି ଛଡ଼ାଇ ନେ । ଏହା କହି ବୁଢ଼ୀ ସେଠାରୁ ଚାଲିଗଲା ।



ଏହା ପରେ ମନୁ ଯାଇ ଗୋଟିଏ ଫାଟକ ନିକଟରେ ପହଞ୍ଚିଲା । ଫାଟକ ପାଖରେ ଜଣେ ସ୍ତ୍ରୀ ଠିଆହୋଇଥିଲା । ମନୁ ଥକ୍କା ହୋଇ ସେଠାରେ ବସିପଡ଼ିଲା ଓ ସେ ସ୍ତ୍ରୀ ଲୋକଟିକୁ କିଛି ଖାଇବାକୁ ମାଗିଲା । ସ୍ତ୍ରୀଲୋକଟି କହିଲା, "ମୋର ସ୍ୱାମୀ ଗୋଟିଏ ରାକ୍ଷସ, ସେ ତୋତେ ଦେଖିଲେ ଖାଇଯିବ । ତେଣୁ ତୁ ଏଠାରେ ନ ବସି ମୋ ସାଙ୍ଗେ ଆ, ମୁଁ ତତେ ନେଇ ମୋ ପାଖରେ ଲୁଚାଇ ରଖିବି ।"

ତାପରେ ମନୁ ଘର ଭିତରକୁ ଗଲା ଓ ସେଠାରେ ଦେଖିଲା ଯେ ବହୁ ଲୋକ ଲୁହା ଶିକୁଳିରେ ବନ୍ଧା ହୋଇ ରହିଛନ୍ତି ।

ସେ ସେହି ସ୍ତ୍ରୀ ଲୋକଠାରୁ ଶୁଣିଲା, ରାକ୍ଷସ ଦୁଇ ଦିନରେ ପାଳିକରି ସେମାନଙ୍କ ମଧ୍ୟରୁ ଜଣକୁ ଖାଏ । ମନୁ ଏଥିରେ ଖୁବ ଡରିଗଲା; କିନ୍ତୁ ସ୍ତ୍ରୀଲୋକଟି ତାକୁ ଆଶ୍ୱାସନା ଦେଲା । ତା ପରେ ସେ ମନୁକୁ ପେଟଭରି ଖାଇବାକୁ ଦେଇ ଗୋଟିଏ ବାକ୍ସରେ ଲୁଚାଇଦେଲା ।

ସେହିଦିନ ରାତିରେ ରାକ୍ଷସ ଘର ଭିତରକୁ ଆସି କହିଲା, "ମୋ ନାକକୁ କେଉଁଠାରୁ ମଣିଷ ମାଂସର ବାସନା ଆସୁଛି ! ମଣିଷ କେଉଁଠି ଅଛି ?"

ତାର ସ୍ତ୍ରୀ ଉତ୍ତର ଦେଲା, 'ବନ୍ଦୀ ହୋଇଥିବା ମଣିଷମାନଙ୍କ ଦେହ ତୁମକୁ କଣ ଆଜି ନୂଆ ପରି ବାସୁଛି !"

ରାକ୍ଷସ ତାପରେ ଖାଇବାକୁ ବସିଲା । ମନୁ ବାକ୍ସ ଭିତରେ ରହି ସବୁ ଦେଖୁଥାଏ । ସେ ଦେଖିଲା ରାକ୍ଷସଟି ଖାଇବାପାଇଁ ଗୋଟିଏ କୁକୁଡ଼ାକୁ ଅଣ୍ଡା ମାଗିଲା । କୁକୁଡ଼ାଟି ରାକ୍ଷସକୁ ଗୋଟିଏ ସୁନାର ଅଣ୍ଡା ଖାଇବାକୁ ଦେଲା ।

ରାକ୍ଷସ ସୁନାର ଅଣ୍ଡାଟି ଖାଇସାରି ନିଦଘାଉ ନିଦରେ ଶୋଇପଡ଼ି ଘୁଙ୍ଗୁଡ଼ି ମାରିଲା । ମନୁ ଠିକ୍ ଏହି ସୁଯୋଗରେ ରାକ୍ଷସର କୁକୁଡ଼ାକୁ ଧରି ସେହି ବଣଫଳ ଗଛ ବାଟେ ନିଜଘରକୁ ଫେରି-ଆସିଲା । ସେହିଦିନଠାରୁ ମା ପୁଅ ଉଭୟେ ପ୍ରତିଦିନ କୁକୁଡ଼ାଠାରୁ ସୁନା ଅଣ୍ଡା ପାଇ ବିକି କରି ସୁଖରେ ରହିଲେ ।

କିଛି ଦିନ ପରେ ପୁଣି ମନୁ ସେହି ଅଦ୍ଭୁତ ଦେଶକୁ ଗଲା । ସେଥର ମଧ୍ୟ ରାକ୍ଷସର ସ୍ତ୍ରୀ ତାକୁ ଲୁଚେଇ ନିଜ ପାଖରେ ରଖିଲା । ସେଦିନ ରାତିରେ ରାକ୍ଷସ ଘର ଭିତରକୁ ଫେରିଆସି ପୂର୍ବପରି 'ମଣିଷର ଗନ୍ଧ କେଉଁଠାରୁ ଆସୁଛି' ବୋଲି ପଚାରିଲା ।

ସ୍ତ୍ରୀଲୋକଟି ସଙ୍ଗେ ସଙ୍ଗେ ଉତ୍ତର ଦେଲା "କୁଆ ଗୁଡ଼ିଏ ବାରୁ ମଣିଷ ମାଂସ ଆଣି ପକାଇଥିବାରୁ ସେହି ଗନ୍ଧ ଆସୁଛି ।" (୯)

ଆଉ କଣ୍ଟ ନ କହି ରାକ୍ଷସ ତାର ଟଙ୍କାଥଳିରୁ ଟଙ୍କା ବାହାର କରି ଗଣିବାକୁ ଲାଗିଲା । ଟଙ୍କା ଗଣିସାରି ସେ ଗୋଟିଏ ବାଜା ଆଣିଲା । ସେହି ବାଜାଟିକୁ ସେ ନାଚିବାକୁ କହିବାରୁ ସେ ଆପେ ଆପେ ଗୀତ ଗାଇ ଗାଇ ନାଚିଲା ଓ ବାଜିଲା । ରାକ୍ଷସ ଗୀତ ଓ ନାଚ ଶୁଣୁ ଶୁଣୁ ଶୋଇପଡ଼ିଲା ।

ଏଥର ମନୁ ସେହି ବାଜାକୁ ଧରି ଘରକୁ ପଳାଇ ଆସିବାକୁ ବସିଲା । ମାତ୍ର ଏହି ସମୟରେ ମନୁ ହାତରେ ଥିବା ବାଜାଟି ଡାକ ପକାଇଲା, "ମାଲିକ, ମାଲିକ, ମୋତେ ମନୁ ନେଇଯାଉଛି ।"

ଏହା ଶୁଣି ରାକ୍ଷସର ନିଦ ଭାଙ୍ଗିଗଲା । ସେ ମନୁ ପଛେ ପଛେ ଗୋଡ଼ାଇଲା । ମନୁ ହଠାତ୍ ସେଇ ବଣଫଳ ଗଛ ଉପରୁ ଡେଇଁ ସଙ୍ଗେ ସଙ୍ଗେ ତଳକୁ ଓହ୍ଲାଇ ଆସିଲା । ଘରୁ ଗୋଟାଏ ଟାଙ୍ଗିଆ ଆଣି ବଣଫଳ ଗଛଟିକୁ ହାଣି ପକାଇଲା । ବଣଫଳ ଗଛ ତଳେ ପଡ଼ିଯିବା ସଙ୍ଗେ ସଙ୍ଗେ ରାକ୍ଷସ ମଧ୍ୟ ତଳେ ପଡ଼ି ମରିଗଲା ।

ସେହିଦିନଠାରୁ ମନୁ ଯେତେବେଳେ କୁହେଁ, ବାଜାଟି ସେତେବେଳେ ମନକୁ ବାଜେ ଓ ଗୀତ ଗାଇ ନାଚେ । ଗୀତ ନାଚ ଶୁଣି ମନୁର ପାଖ ପଡ଼ୋଶୀ ପିଲାମାନେ ମଧ୍ୟ ଖୁସି ହୁଅନ୍ତି ।

ପ୍ରଶ୍ନ— ୧ । ପିଲାଟି କିପରି ରାକ୍ଷସ ଘରକୁ ଯାଇ ପାରିଲା ?

୨ । ରାକ୍ଷସ ଘରୁ ପିଲାଟି କଣ କଣ ଆଣି ପାରିଲା ଓ ତାକୁ କିପରି ମାରିଲା ?

୩ । ଆଶ୍ୱାସନା, ସୁଯୋଗ, ମହକ, ଆପେ ଆପେ, କଟୋରି, ସମ୍ମୁଖ—ଏଗୁଡ଼ିକୁ ଲଗାଇ ବାକ୍ୟ ଗଢ଼ ।

---




ବରଷା ଦିନେ ଉଚ୍ଛୁଳା ନଈ
ପାହାଡ ତଳୁ ଥରେ
ଝରଣେ କଳ କୁହାଟ ଶୁଣି
କହିଲା—ଡାକ ସ୍ୱରେ—
"ତୋପରି ହାନ୍‌-ହଜମା ମୁଁ ତ
କେଉଁଠି ଦେଖି ନାହିଁ,
କାହିଁକି ତଳ ପଡ଼ୁଛୁ ଏଠି
କେଉଁ ସୁଖଟା ପାଇଁ ?
କଳ କଳ ତ ବାହୁନି ସଦା
ପକାଉଅଛୁ ଡକା
ଶକତ ଏହି ପାହାଡ଼ ପରେ
ଖାଉଛୁ କେତେ ଧକ୍‌କା ।
ଜାଣିଲୁ ନାହିଁ ବିଦେଶ ସୁଖ
ମରୀଚେ ହୋଇ ଗଣା
ତେଣୁ ଗରବ ମୂଲଆ ପରି
ପାଉଚୁ ମୋତେ ଜଣା ।"

କହିଲା ଝିଅ, "ହୋଇଛୁ ଭଲ
ଭାବିଲୁ ଟିକେ ମନେ,
କହ ରେ ଭଲ ଧର୍ମ ବୋଲନ୍ତି
କାହାର ମୂଳଧନେ ?

ନିଜ ଦେହକୁ ଶୁଖାଇ ଟୋଟେ
ଗଢ଼ିଲା ସିଏ ନଈ,
ଗୃହଁ କି ବନେ ତାହାରି ଆଡ଼େ
ଶରଧା ମନେ ବହି ?

ଶୀତଳ ପାଣି ପବନ ମୁହିଁ
ଯୋଗାଏ ତାହା ପାଇଁ
ଜୀବନ ଧରେ ତା' କୋଳ ପଶୁ
ମୋହର ଜଳ ଖାଇ ;

ସେହିଟି ମୋର ଜନମ ଭୂଇଁ
ସବୁ ସୁଖର ଥାନ
ତା' କୋଳ ଛାଡ଼ି ଗୃହେଁ ନା ମୁହିଁ
ସରଗ ସନମାନ ;

ତା' କଇଲଣେ ଶୁଖାଇ ମୋତେ
ପାରେ ନା ଏତେ ଖରା
ଈଶ୍ବର ପରକା ହାତରେ ଯାର,
ଘଣ୍ଟୁ ଛୁ ଆଗେ ଧର ;

ଯେଉଁ ପାଣିକୁ ମୋଠାରୁ ନେଇ
ଯାଉ ତୁ କାହିଁ ଚାଲି
ଶୁଖାଏ ଖରା ପରେ ତାହାକୁ
କରି ତୋ ଦେହ ଖାଲି

ଦୋଷୀଟି ସମ ତୁନ୍, ତୁ ରହୁ
ଧନ୍ଦୁନ କରେ ମନେ
କପରି ଝୁରି ହେଉ ତୁ ପୁଣି
ଏହି ପାହାଡ଼ ବନେ ?

ତେଣୁ ମୁଁ ଏବେ ଗରବ ହେବ
ମହତ ପାଖେ ଥାଇ
ଚୋର ହେବନି ତୋପରି କେବେ
ଧନୀ ହେବାକୁ ଯାଇ ।

ପ୍ରଶ୍ନ—୧ । ନଈ ଝରଣାକୁ କଣ କହିଲା ?
୨ । ଝରଣା ତାକୁ କି ଉତ୍ତର ଦେଲା ?
୩ । ଥାନ, କଇଲାଶ, ପାହାଡ଼େ, କରମ, ସରଗ, ଗରବ, ଶବଦ—ଏଗୁଡ଼ିକ ଗଦ୍ୟରେ କିପରି ବ୍ୟବହାର ହେବ ?
୪ । ତୁମମାନଙ୍କ ଭିତରୁ ଜଣେ ଝରଣା ହୋଇ ଓ ଜଣେ ନଦୀ ହୋଇ ଏହି ପଦ୍ୟକୁ ବୋଲି ଅଭିନୟ କର ।

# ବୀରବଲ୍ ଓ ଭଣ୍ଡାରି

ସମ୍ରାଟ ଅକବରଙ୍କ ଦରବାରରେ ବୀରବଲ ନାମରେ ଜଣେ ବିଦୂଷକ ଥିଲେ । ସେ ସମ୍ରାଟଙ୍କୁ ବହୁତ କୌତୁକିଆ କଥା କହି ମନ ଖୁସି କରାଉଥିଲେ । ସେଥିପାଇଁ ସମ୍ରାଟ ବୀରବଲ୍‌ଙ୍କର ବଡ଼ ପ୍ରଶଂସା କରୁଥିଲେ । ବୀରବଲଙ୍କର ପ୍ରଶଂସାରେ ଦରବାରର ଅନ୍ୟ ଲୋକଙ୍କର ମନ ଈର୍ଷାରେ ଜଳିଉଠିଲା । ତେଣୁ ସେମାନେ ବୀରବଲଙ୍କର ସୁନାମରେ କଳଙ୍କ ବୋଳିବାକୁ ବହୁତ ଚେଷ୍ଟା କଲେ ।

ସେମାନେ ବୀରବଲଙ୍କର ଛୋଟ ଛୋଟ କଥାକୁ ସମ୍ରାଟଙ୍କ ଆଗରେ ବଢ଼ାଇ କରି କହିବାକୁ ଲାଗିଲେ । ଯେତେ ପ୍ରକାର ମିଛ କହିଲେ ମଧ୍ୟ ବୀରବଲ କୌଶଳ କରି ସେଥିରୁ ରକ୍ଷା ପାଇଗଲେ । ତେଣୁ ସେମାନେ ବୀରବଲଙ୍କୁ ଜୀବନରେ ମାରିଦେବାପାଇଁ ଉପାୟ ଖୋଜିଲେ । ଶେଷରେ ସେମାନେ ସମ୍ରାଟଙ୍କ ଭଣ୍ଡାରୀଦ୍ୱାରା ଏହି କାର୍ଯ୍ୟଟି କରାଇବାକୁ ସ୍ଥିର କଲେ । ସେମାନେ ଭଣ୍ଡାରିକୁ ବହୁତ ଧନ ଦେଇ ଗୁପ୍ତରେ ସମସ୍ତ କଥା କହିଲେ । ଭଣ୍ଡାରି ତାହା ଶୁଣି ବଢ଼ାଇ କରି କହିଲା, "ମୁଁ ନିଶ୍ଚୟ ବୀରବଲଙ୍କୁ ମରାଇଦେବି ।"

ଥରେ ସମ୍ରାଟ ଆକବର ଖୁସି ମନରେ ଥିଲାବେଳେ ଭଣ୍ଡାରିଟି ତାଙ୍କୁ କହିଲା: "ମହାରାଜ, ମୁଁ ଆପଣଙ୍କ ପୂଜନୀୟ ପିତାଙ୍କ ବାଳ କାଟୁଥିଲି । ସେଗୁଡ଼ିକ କେତେ ଚିକ୍କଣ !"

ଆକବର ଆଗ୍ରହ ପ୍ରକାଶ କରି କହିଲେ, "ସତରେ ?"

ଭଣ୍ଡାରି କହିଲା, "ତାଙ୍କର ବାଳ ଭେଲ୍‌ଭେଟ୍ କନାପରି ନରମ ଓ ଚିକ୍କଣ ଥିଲା ।" ଭଣ୍ଡାରି ପୁଣି କିଛି ସମୟ ରହି କହିଲା, "ମହାରାଜ, ଆପଣ ଆଦେଶ ଦେଲେ ମୁଁ ଗୋଟିଏ କଥା ଉଠାଏ ।"

ସମ୍ରାଟ କହିଲେ, "କହିପାର ।"

ଭଣ୍ଡାର କହିଲା, "ମହାରାଜ, ଆପଣ ଏଠାରେ ଖୁସିରେ ରହି ଖୁବ୍ ମଜଳ କରୁଛନ୍ତି; କିନ୍ତୁ ଆପଣଙ୍କ ପିତାମାତା ସ୍ୱର୍ଗରେ କଣ କରୁଛନ୍ତି ଜାଣନ୍ତି କି ?"

ସମ୍ରାଟ କହିଲେ, "ମୁଁ କପରି ଜାଣିବ ? ସେମାନେ ତ ସ୍ୱର୍ଗରେ ଅଛନ୍ତି ।"

ଭଣ୍ଡାର କହିଲା, "ଏହା ଜାଣିବାରେ କିଛି ଅସୁବିଧା ନାହିଁ । ମୁଁ ଏକ ମନ୍ତ୍ର ଜାଣିଛି । ସେହି ମନ୍ତ୍ର ବଳରେ ସ୍ୱର୍ଗକୁ ଲୋକ ପଠାଇ ସେଠାରୁ ଆପଣଙ୍କ ପିତାମାତାଙ୍କର ଖବର ଆଣିପାରିବ ।"

ଆକବର କହି ଉଠିଲେ, "ଏହା ଯଦି ସତ୍ୟ ହୋଇଥାଏ, ତାହାହେଲେ ମୋର ପୂର୍ବପୁରୁଷମାନଙ୍କ ଖବର ଆଣିଦିଅ ।"

କିଛିଦିନ ପରେ ଭଣ୍ଡାର ଆକବରଙ୍କ ଦରବାରକୁ ଆସି କହିଲା, "ମହାରାଜ, ମୁଁ ସେହି ମନ୍ତ୍ରଦ୍ୱାରା ସମସ୍ତ ବସ୍ତୁ ଠିକ୍ କରିଛି । ଏବେ ଆପଣ କାହାକୁ ସେଠାକୁ ପଠାଇବେ ? ଜଣେ ଖୁବ୍ ବୁଦ୍ଧିମାନ ଲୋକ ଏଥି ନିମିତ୍ତ ଦରକାର । ଏ କାର୍ଯ୍ୟପାଇଁ ଆମ ଦରବାରରେ ବୀରବଳଙ୍କ ଛଡ଼ା ଅନ୍ୟ କୌଣସି ଲୋକ ନାହାନ୍ତି ।

ବାଦଶାହ କହିଲେ, "ଏ କାର୍ଯ୍ୟପାଇଁ କେବଳ ବୀରବଳ ନାହିଁକି ଉପଯୁକ୍ତ ?"

ଭଣ୍ଡାର କହିଲା, "ଆଜ୍ଞା, ସେଠାକୁ କୌଣସି ସାଧାରଣ ଲୋକ ପଠାଗଲେ ଆପଣଙ୍କର ପୂର୍ବପୁରୁଷମାନେ ଅପମାନ ବୋଧ-କରିବେ ।"

କିଛି ସମୟ ଭାବି ସମ୍ରାଟ କହିଲେ, "ପ୍ରକୃତରେ ଏ କଥା ଠିକ୍, କିନ୍ତୁ ବୀରବଳଙ୍କୁ କପରି ସ୍ୱର୍ଗକୁ ପଠାଇହେବ ?"

ଭଣ୍ଡାର କହିଲା, "ଏଥିରେ ଅଧିକ କିଛି କରିବାକୁ ହେବ ନାହିଁ । ବୀରବଲଙ୍କୁ ଶୋଭାଯାତ୍ରାରେ ପୂର୍ବପୁରୁଷଙ୍କ ସମାଧିପୀଠ ନିକଟକୁ ନେଇଯିବା । ସମାଧିପୀଠ ଉପରେ ସେ ବସିବେ । ତାଙ୍କ ଚାରିକଡ଼ରେ ଚନ୍ଦନକାଠ ରଖାହେବ । ତାପରେ ମୁଁ ମନ୍ତ୍ରଟି ସଙ୍ଗେ ସଙ୍ଗେ ପଢ଼ିବ ଓ ନିଆଁ ଲଗା ହେବ । ନିଆଁ ଜଳି ଲିଭିଯିବା ପୂର୍ବରୁ ବୀରବଲ ସ୍ୱର୍ଗକୁ ଚାଲିଯିବେ ଓ ଆପଣଙ୍କ ପୂର୍ବପୁରୁଷଙ୍କ ସହିତ କଥାବାର୍ତ୍ତା କରି ପୁନର୍ବାର ପୃଥିବୀକୁ ଫେରି ଆସିବେ ।"

ବାଦଶାହ ତାହା ଶୁଣି ବୀରବଲଙ୍କୁ ଡକାଇ ପଠାଇଲେ । ବୀରବଲ ସେଠାକୁ ଆସିବାରୁ ସମ୍ରାଟ ତାଙ୍କୁ ଆଦେଶ କଲେ, "ତୁମେ ସ୍ୱର୍ଗକୁ ଯାଇ ସେଠାରୁ ମୋର ପୂର୍ବପୁରୁଷଙ୍କ ସମ୍ବାଦ ନେଇଆସ ।"

ବୀରବଲ ପଚାରିଲେ, "ବାଦଶାହ, ଏହା କପରି ସମ୍ଭବ ?"

ଆକବର କହିଲେ, "ଏହି ଭଣ୍ଡାର ଏକ ମନ୍ତ୍ର ଜାଣେ, ଯଦ୍ୱାରା ସେ ଗୋଟିଏ ଲୋକକୁ ସ୍ୱର୍ଗକୁ ପଠାଇ ପୁନର୍ବାର ଫେରାଇ ଆଣିପାରିବ ।"

ବୀରବଲ କହିଲେ, "ଆପଣ କଣ ଏ ଭଣ୍ଡାର କଥାରେ ବିଶ୍ୱାସ କରୁଛନ୍ତି ?"

ଆକବର ଉତ୍ତର ଦେଲେ, "କାହିଁକି ବିଶ୍ୱାସ ନ କରିବି ? ତାର ଏଥିରେ କି ଲାଭ ଅଛି ଯେ ସେ ମୋତେ ମିଛ କହିବ ?"

ବୀରବଲ କହିଲେ, "ଆଜ୍ଞା, ସେ ଭଣ୍ଡାର ଲୋକ, ଖିଅର କରିବା ଛଡ଼ା ଅନ୍ୟ କିଛି ଜାଣେ ନାହିଁ ।

ହଠାତ ଭଣ୍ଡାର ଖୁବ୍ ଗର୍ବର ସହିତ ବୀରବଲଙ୍କୁ କହିଲା, "ମୁଁ ଅନ୍ୟମାନଙ୍କ ପରି ସାଧାରଣ ଭଣ୍ଡାର ନୁହେଁ । ତୁମର ଯିବାକୁ ଇଚ୍ଛା ଅଛି କି ନାହିଁ କହ ।"

ବୀରବଲ କହିଲେ, "ନା ମୋର ଇଚ୍ଛା ନାହିଁ, ତୁମର ଇଚ୍ଛା ଥିଲେ ତୁମେ ଯାଅ ।"

ସମ୍ରାଟ କହି ଉଠିଲେ, "ନା, ମୁଁ ମୋ ପୂର୍ବପୁରୁଷମାନଙ୍କ ନିକଟକୁ ଗୋଟିଏ ସାମାନ୍ୟ ନାପିତଟିକୁ ପଠାଇପାରିବ ନାହିଁ ।"

ବୀରବଲ ବୁଝିଲେ, ସମ୍ରାଟ ଯେତେବେଳେ ଭଣ୍ଡାରି କଥାରେ ପାଗଳ ହୋଇଛନ୍ତି, ଆଉ ତାଙ୍କ ସହିତ ବିତଣ୍ଡା ଯୁକ୍ତି କରିବା ଦରକାର ନାହିଁ । ତେଣୁ ସେ ସମ୍ରାଟଙ୍କୁ କହିଲେ, "ଆଜ୍ଞା, ମୁଁ ସ୍ୱର୍ଗକୁ ଯିବାକୁ ରାଜି ଅଛି, ମାତ୍ର ମୋର କେତେକ ଅସୁବିଧା ଆପଣଙ୍କୁ ବୁଝାଇବାକୁ ପଡ଼ିବ ।"

ସମ୍ରାଟ କହିଲେ, ହଁ ସେଥିପାଇଁ ନିଶ୍ଚୟ ବ୍ୟବସ୍ଥା କରାଯିବ । କୁହ, ତୁମର କଣ ଅସୁବିଧା ?"

ବୀରବଲ କହିଲେ, "ବାଦଶାହ, ସ୍ୱର୍ଗକୁ ଗଲେ ମୁଁ ଘରେ ନଥିବା ସମୟରେ ମୋ ଘରଖର୍ଚ୍ଚ ନିମନ୍ତେ ପ୍ରଚୁର ଟଙ୍କା ଲୋଡ଼ା ହେବ । ତା' ଛଡ଼ା ମୋତେ ପ୍ରସ୍ତୁତ ହେବାପାଇଁ ସମୟ ମଧ୍ୟ ଆବଶ୍ୟକ ।"

ତାପରେ ବୀରବଲ ଯେତେ ଟଙ୍କା ମାଗିଲେ, ଆକବର ତାହା ଦେଲେ । ଆଉମଧ୍ୟ ତାଙ୍କୁ ପ୍ରସ୍ତୁତ ହେବାପାଇଁ ଏକମାସ ଛୁଟି ଦେଲେ । ଏହି ମାସକ ଛୁଟି ମଧ୍ୟରେ ବୀରବଲ ତାଙ୍କ ଘରଠାରୁ ସମାଧି ପୀଠ ପର୍ଯ୍ୟନ୍ତ ଏକ ଗୁପ୍ତ ସୁଡ଼ଙ୍ଗ ନିର୍ମାଣ କଲେ ।

ବୀରବଲ ମାସେ ପରେ ଦରବାରରେ ଉପସ୍ଥିତ ହେଲେ । ସେଦିନ ତାଙ୍କୁ ସମାଧିପୀଠ ପର୍ଯ୍ୟନ୍ତ ଏକ ଶୋଭାଯାତ୍ରାରେ ନିଆଗଲା । ଭଣ୍ଡାରିଟି ମଧ୍ୟ ସେଠାରେ ଉପସ୍ଥିତ ଥିଲା । ବୀରବଲ ସମାଧିପୀଠ ଉପରେ ଚନ୍ଦନକାଠ ମଝିରେ ବସିଲାପରେ ଭଣ୍ଡାରି ନିଜରେ କଣ ମନ୍ତ୍ର ପଢ଼ି ସେଥିରେ ନିଆଁ ଲଗାଇ ଦେଲା ।

ନିଆଁ ଅଳ୍ପ ଜଳିବାପରେ ବୀରବଲ ସେଥିରେ ଏକ ଚୂର୍ଣ୍ଣ ପକାଇ ଦେଲେ ଓ ତଦ୍ୱାରା ନିଆଁରୁ ଖୁବ୍ ଜୋରରେ ଧୂଆଁ



ବାହାରିଲା । ଧୂଆଁରେ ଚାରିଆଡ଼ ଘୋଡ଼େଇ ହୋଇଯିବାରୁ ବୀରବଲଙ୍କୁ ଆଉ କେହି ଦେଖିପାରିଲେ ନାହିଁ । ସେ ଏହି ସୁଯୋଗରେ ସେହି ଗୁପ୍ତ ସୁଡ଼ଙ୍ଗ ଦେଇ ତାଙ୍କ ଘରକୁ ଚାଲିଗଲେ ।

ନିଆଁ ଜଳି ସବୁ ଲିଭିଯାଇବାପରେ ବୀରବଲଙ୍କ ଶତ୍ରୁମାନେ ଭାବିଲେ, ସେମାନଙ୍କର କଣ୍ଟା ଗଲା । ତେଣୁ ସେମାନେ ଖୁବ୍ ଖୁସି ହୋଇ ଘରକୁ ଫେରିଲେ ।

ଛମାସ କିଛିଦିନ ଘରେ ରହି ପୁଣି ଦିନେ ରାଜାଙ୍କ ଦରବାରକୁ ଫେରିଗଲେ । ସେତେବେଳେ ତାଙ୍କର ବାଳ ଏବଂ ନଖ ଖୁବ୍ ବଡ଼ ବଡ଼ ହୋଇଯାଇଥିଲା । ଆଉ ମଧ୍ୟ ସେ ଖୁବ୍ ଅଦ୍ଭୁତ ପ୍ରକାରର ଲୁଗାପଟା ପିନ୍ଧିଥିଲେ । ତାଙ୍କର ଏପରି ପରିବର୍ତ୍ତନ ଦେଖି ବାଦଶାହ ଭାବିଲେ ଯେ ବୀରବଲ ନିଶ୍ଚୟ ସ୍ୱର୍ଗରୁ

ଫେରିଲେ । ତେଣୁ ସେ ଖୁସିହୋଇ ପଚାରିଲେ, "ବୀରବଲ, ତୁମେ ଫେରିଆସିଲ ?"

ସେ କହିଲେ, "ବାଦଶାହଙ୍କର ଦୟାରୁ ଫେରିଆସିଲି ।"

ସମ୍ରାଟ ତାଙ୍କୁ ପଚାରିଲେ, "ଆଚ୍ଛା, ମୋର ପୂର୍ବପୁରୁଷମାନେ କିପରି ଅଛନ୍ତି ? ସେମାନେ କଣ ମୋତେ ମନେ ରଖିଛନ୍ତି ?"

ବୀରବଲ ସଙ୍ଗେ ସଙ୍ଗେ ଉତ୍ତର ଦେଲେ, "ସେମାନେ ଖୁବ୍ ଭଲରେ ଅଛନ୍ତି ଓ ଆପଣଙ୍କର ଖ୍ୟାତି ଯୋଗୁ ଭାରି ଖୁସି, ତଥାପି ସେମାନଙ୍କର ଗୋଟିଏ କଥାର ଅଭାବ ଅଛି ।"

ଆକ୍ବର ହଠାତ୍ ପଚାରିଲେ, "କି ପ୍ରକାର ଅଭାବ ?"

ବୀରବଲ କହିଲେ, "ମହାରାଜ, ସ୍ୱର୍ଗରେ ଭଣ୍ଡାରି ନାହାନ୍ତି କିମ୍ବା ସେଠାକୁ ଏଠାରୁ କୌଣସି ମୃତ ଭଣ୍ଡାରି ଯାଇ ନାହାନ୍ତି । ତେଣୁ ଆପଣଙ୍କର ପୂର୍ବପୁରୁଷମାନଙ୍କୁ ଖୁବ୍ ଅସୁବିଧାରେ ପଡ଼ିବାକୁ ହେଉଛି । ସେମାନଙ୍କର ବାଳଗୁଡ଼ିକ ଏତେ ବଢ଼ିଛି ଯେ ସେମାନେ ସହଜରେ ଚାଲି ପାରୁନାହାନ୍ତି । ପୂର୍ବରୁ ଥରେ ଦୁଇଥର ସେମାନେ ଅନ୍ୟ କେତେକଙ୍କଠାରୁ କ୍ଷୁର ମାଗିନେଇ କ୍ଷିଅର ହୋଇଥିଲେ । ଏବେ ସେମାନେ ଆପଣଙ୍କର ପୂର୍ବପୁରୁଷମାନଙ୍କୁ ଆଉ କ୍ଷୁର ନଦେଇ ଥଟ୍ଟା କରୁଛନ୍ତି । ଏଣୁ ଅପମାନ ପାଇ ଆପଣଙ୍କ ପୂର୍ବପୁରୁଷମାନେ ଆଉ କ୍ଷିଅର ହେଉ ନାହାନ୍ତି । ଆପଣ ଏହାର ସୁବନ୍ଦୋବସ୍ତ କରନ୍ତୁ ।

ଆକବର ଏହା ଶୁଣି ଦୁଃଖରେ କହିଲେ, "ଏହା ଯଦି ହୋଇଥାଏ, ତା'ହେଲେ ଏଠାରୁ ଗୋଟିଏ ଭଣ୍ଡାରି ପଠାଇବା ଦରକାର । ମୁଁ ଏହାର ବ୍ୟବସ୍ଥା କଲେ ମୋର ପୂର୍ବପୁରୁଷମାନେ ମୋତେ ଆଶୀର୍ବାଦ କରିବେ ।"

ତହୁଁ ବୀରବଲ ଆନନ୍ଦରେ କହିଲେ, "ବାଦଶାହ, ସେମାନେ ଆମର ଦରବାରର ଭଣ୍ଡାରିକୁ ମନେରଖିଛନ୍ତି ଏବଂ ତାର ଭାରି ପ୍ରଶଂସା କରୁଥିଲେ । ଆପଣ ଶୀଘ୍ର ତାକୁ ପଠାଇ ଦିଅନ୍ତୁ ।"

ଆକବର ଏଥିରେ ରାଜିହୋଇ ଦରବାରର ସେହି ଭଣ୍ଡାଣକୁ ସ୍ୱର୍ଗକୁ ଯିବା ଉଦ୍ଦେଶ୍ୟରେ ପ୍ରସ୍ତୁତ ହେବାକୁ କହିଲେ । ବୀରବଲଙ୍କ ଶତ୍ରୁମାନେ ଏଥିରେ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲେ ଓ ତାଙ୍କର କୌଶଳ ଜାଣିପାରିଲେ । ତେଣୁ ସେମାନେ ବର୍ତ୍ତମାନ ଭଣ୍ଡାଣକୁ ରକ୍ଷା କରିବାପାଇଁ ଚେଷ୍ଟା କଲେ ।

ସେମାନେ ଆକବରଙ୍କୁ ବୀରବଲଙ୍କ ବିରୁଦ୍ଧରେ ନାନା କଥା କହିବାକୁ ଲାଗିଲେ, ମାତ୍ର ଆକବର କୌଣସି କଥାରେ ନ ଭୁଲି "ଭଣ୍ଡାଣକୁ ସ୍ୱର୍ଗକୁ ନିଶ୍ଚୟ ଯିବାକୁ ହେବ ବୋଲି କହିଲେ ।"

ରକ୍ଷା ପାଇବାର କୌଣସି ଉପାୟ ନ ଦେଖି ଭଣ୍ଡାଣ ବୀରବଲଙ୍କ ଘରେ ପହଞ୍ଚି ତାଙ୍କ ଗୋଡ଼ତଳେ ଲମ୍ବହୋଇ ପଡ଼ିଗଲା । ବୀରବଲ ତାକୁ ନେଇ ଆକବରଙ୍କ ନିକଟକୁ ଗଲେ । ସେଠାରେ ଭଣ୍ଡାଣ ସମ୍ରାଟଙ୍କୁ ସବୁ ସତ କଥା କହିବାରୁ ସେ ବୀରବଲଙ୍କ ଶତ୍ରୁମାନଙ୍କ ଉପରେ ଭୀଷଣ ରାଗିଗଲେ ଓ ସେମାନଙ୍କୁ ଦରବାରରୁ ବାହାର କରିଦେଲେ ।

**ପ୍ରଶ୍ନ**— ୧ । ବୀରବଲଙ୍କୁ ମାରିବାପାଇଁ ତାଙ୍କ ଶତ୍ରୁମାନେ କିପରି କୌଶଳ କଲେ ?

୨ । ବୀରବଲ ସେମାନଙ୍କୁ କିପରି ସମ୍ରାଟଙ୍କ ଦରବାରରୁ ବାହାର କରାଇଥିଲେ ?

୩ । ପ୍ରଚୁର, ନାପିତ, ପୂର୍ବପୁରୁଷ, ପୁନର୍ବାର, ପ୍ରସ୍ତୁତ, ଅଦ୍ଭୁତ, ଶୋଭାଯାତ୍ରା, ନିର୍ମାଣ, କଳଙ୍କ, ସୁନାମ, ଅଜସ୍ର, ବିରୋଧ, ଉପଯୁକ୍ତ— ଏଗୁଡ଼ିକର ଅର୍ଥ କହ ।

୪ । ଶୂନ୍ୟସ୍ଥାନ ପୂରଣ କର:—

ଆକବର— କଥାରେ ନ ଭୁଲି "—ସ୍ୱର୍ଗକୁ— ଯିବାକୁ—" ବୋଲି କହିଲେ ।

— — —




''ନାଲି ଗୁଲୁ ଗୁଲୁ ସାଧବ ବୋହୂ ଲୋ ସାଧବ ବୋହୂ !
କଅଁଳ ଘାସର କାନେ କାନେ ତୁ ଲୋ କି କଥା କହୁ ?
ସେ କେଉଁ ଯୁଗର କେଉଁ ସାଧବର ତୁ ଅଟୁ ଝିଅ,
ତୋତେ ଦେଖି ବଢ଼େ ଓଡ଼ିଆ ପୁଅର ପରାଣେ କୋହ ।
ଆଖି ଆଗେ ସ୍ପଷ୍ଟ ଅତୀତ ଯୁଗର କାହାଣୀମାଳା
[illegible] ଦେଖି ଆସେ ଗୃହ ସୁକୁମାରୀ ସାଧବ ବାଳା !
ଆଜି ଏ କ୍ଷଣେ ତୋତେ ଦେଖି ମୋର ପଡ଼ଇ ମନେ,
କେତେ ବଡ଼ ଥିଲେ ଓଡ଼ିଆ ଜାତିର ତନୟଗଣେ ! !
ତୋ' ନାମେ, ତୋ ରୂପେ ଅତୀତ ଯୁଗର ସ୍ମୃତି ଫୁଲ,
ମୋହର ଦେଶର ସାଧବ ପୁଅ ସେ ବଣ୍ଡମା, ବଳ ।
ଦିନ ଥିଲା ଯେବେ ସାଗର ଛାତିରେ ଉଡ଼ାଇ କେତ,
ବୋଇତ ଭସାଇ ଯାଉଥିଲେ ଦୂରେ ଓଡ଼ିଆ ପୋତ ।
ଜାଭା, ବାଲି ଆଉ ସୁମାତ୍ରା ଆଦି ସୁଦୂର ପଥ,
ବେପାର ବଣିଜ ମେଲି ଦେଉଥିଲା ଏ ଜାତି ମନ୍ତ୍ର !
ନେଳି ଦରିଆରେ ନେଳି ଲହଡ଼ିକି କାଟି କାଟିକା
ବୋଇତେ ସାଧବ ଫେରୁଥିଲେ ଯେବେ ହସି ହସିକା—
ସାଥୀ ସହଚରୀ ମେଳରେ ତୁହି ଲୋ ବେଳାରେ ମିଳି
ବନ୍ଦାଉଥିଲୁ ତୁ ବୋଇତକୁ ଧରି ଅରଘ ଥାଳି ।

ଝୁଲଝୁଲି ଆଉ ବାଇଦ ଗାନରେ ହୋଇ ମୁଗ୍ଧ
ହସି ଉଠୁଥିଲ ମୋ' ବଙ୍ଗଦେଉଳ ଚଳକା କୂଳ ।
ସବୁ ବନ୍ଦରେ ବଡ଼ ଥିଲ ମୋର ଓଡ଼ିଆ ଜାତି
ନାଆଁ ତାଙ୍କ ଶୁଣି ଥରି ଉଠୁଥିଲେ ବଙ୍ଗ ଗୁଜ୍ରାତି ।
ଆଜ ତ ନାହିଁ ସେ ଓଡ଼ିଆ ସାଧବ ବୋଇତ ବାହି
ସେମାନଙ୍କ କରମ ରହିଅଛି ଆଜି କାହାଣୀ ହୋଇ ।
ନାଲି ଗୁଲୁଗୁଲୁ ସାଧବ ବୋହୂ ଓଳି ସାଧିବ କେଉଁଠୁ ।
କଅଁଳ ଘାସର କାନେ କାନେ ତୁମ୍ଭ ଏଥା କି କହୁ ?"

ପ୍ରଶ୍ନ—୧ । ସାଧବ ବୋହୂଟିକୁ ଦେଖିଲେ କଣ ସବୁ ଅତୀତ
କାହାଣୀ ମନେପଡ଼େ ?

୨ୟ ତନୟ, ବନ୍ଦମା, ଚୂଡ଼ି, ନେତ, ଠାଳ,
ବାଳା, ଗାନ, ବେଳା, ସହରଙ୍କ ଏଗୁଡ଼ିକର
ଅର୍ଥ କହ ।

୩ । ଅରଣ୍ୟ, ସୁନ୍ଦର, ହୁମାଡାକ, ବାଇଦ—ଏଗୁଡ଼ିକ
ଗଦ୍ୟରେ କଣ ହେବ ?

---

## ସୁଖୀ କିଏ

ବହୁଦିନ ତଳର କଥା । କାଶ୍ମୀରର ରାଜା ଥରେ ବେମାର ପଡ଼ନ୍ତେ ମନ୍ତ୍ରୀ ଏପରିକି ତାଙ୍କ ତଣ୍ଟିରେ ପାଣି ଟିକିଏ ମଧ୍ୟ ଗଳୁନ । କେତେ ବୈଦ୍ୟ, ଚିକିତ୍ସକ, ଗୁଣିଆ ଆସିଲେ । ସମସ୍ତେ ନିଜନିଜର ପାରୁପର୍ଯ୍ୟନ୍ତ ଲାଗି ଚିକିତ୍ସା କଲେ; ତଥାପି ରାଜାଙ୍କ ଦେହ ଟିକିଏ ହେଲେ ଭଲ ହେଉ ନ ଥାଏ ବା ସେ ବିଛଣାରୁ ଉଠି ନ ଥାନ୍ତି ।

ଏହି ଖବରରେ ରାଜ୍ୟସାରା ହାହାକାର ପଡ଼ିଗଲା । ରାଣୀ ଶୁଣିଲା ସେ ମୁଣ୍ଡରେ ହାତ ଦେଇ ବସିପଡ଼ିଲା । ରାଜ୍ୟର ସମସ୍ତେ ରାଜାଙ୍କୁ ଦେଖା କରିବାକୁ ଦଳ ଦଳ ହୋଇ ଆସିଲେ; ମାତ୍ର ରାଜା କାହା ସହିତ କଥା କହିପାରୁ ନ ଥାନ୍ତି ।

ଏତେବେଳେ ଜଣେ ଚତୁର ସନ୍ନ୍ୟାସୀ ରାଜାଙ୍କର ବେମାରି କଥା ଶୁଣି ରାଜାଙ୍କ ନିକଟରେ ପହଞ୍ଚିଲେ । ରାଜାଙ୍କର ସେତେବେଳେ



ଶଯ୍ୟାରୁ ଉଠିବାର ଶକ୍ତି ନ ଥିଲା । ଏହା ଦେଖି ସନ୍ନ୍ୟାସୀ ବହୁ ସମୟ ବସି ଚିନ୍ତା କଲେ । ତା ପରେ ମନ୍ତ୍ରୀଙ୍କୁ ଡାକି କହିଲେ, "ଯଦି ଆପଣ ଏଠାକୁ ରାଜ୍ୟର ସମସ୍ତଙ୍କଠାରୁ ସୁଖୀ ଲୋକକୁ ଆଣିପାରିବେ ତା ହେଲେ ରାଜା ଉଠି ବସିବେ ।" ଏ କଥା ଶୁଣିବା ମାତ୍ରେ ମନ୍ତ୍ରୀ ରାଜ୍ୟର ସବୁଠାରୁ ସୁଖୀ ଲୋକକୁ ଆଣିବାକୁ ତାଙ୍କର ଅନୁଚରମାନଙ୍କୁ ପଠାଇଲେ ।

ଅନୁଚରମାନେ ପ୍ରଥମେ ରାଜ୍ୟର ଜଣେ ବଡ଼ ଜମିଦାରଙ୍କ ପାଖରେ ପହଞ୍ଚିଲେ । ଜମିଦାର ସେତେବେଳକୁ ତାଙ୍କ ଅଫିସ୍ ଘରେ ବସି ଜମା ଖର୍ଚ୍ଚ ଲେଖୁଥାନ୍ତି । ସେମାନେ ତାଙ୍କୁ କହିଲେ "ଆପଣ ତ ଏହି ରାଜ୍ୟରେ ସବୁଠାରୁ ସୁଖୀ । ଆପଣଙ୍କୁ ରାଜା ଦେଖିଲେ ତାଙ୍କର ରୋଗ ଭଲ ହୋଇଯିବ । ତେଣୁ ଆପଣ ଦୟାକରି ରାଜାଙ୍କ ନିକଟକୁ ଆସନ୍ତୁ ।"

ଜମିଦାର ଏହା ଶୁଣି କହିଲେ, "ତୁମମାନଙ୍କୁ କିଏ କହିଲା ମୁଁ ସୁଖୀ ! ମୋ ଛଡ଼ା ଏ ରାଜ୍ୟରେ ଦୁଃଖୀ କେହି ନାହିଁ । ମୋର ସବୁବେଳେ ଏହି ଜମିଦାରୀ ବିଷୟ ଚିନ୍ତା କରୁ କରୁ ଦିନ ଯାଉଛି । ଶାନ୍ତିରେ ଗଣ୍ଡେ ଖାଇପାରୁ ନାହିଁ କି ନିଶ୍ଚିନ୍ତରେ ଟିକିଏ ଶୋଇପାରୁ ନାହିଁ । ଏ ଧନ ସମ୍ପତ୍ତି ଯୋଗୁ ମୋର ସମସ୍ତ ସୁଖ ଶାନ୍ତି ନଷ୍ଟ ହେଉଛି ।"

ଜମିଦାରଙ୍କଠାରୁ ଏହା ଶୁଣି ଅନୁଚରମାନେ ତାଙ୍କ ପାଖରୁ ଫେରିଗଲେ । କିଛି ସମୟ ପରେ ସେମାନେ ଅନ୍ୟ ଜଣେ ଧନୀ ଲୋକଙ୍କ ନିକଟକୁ ଗଲେ । ତାଙ୍କୁ ମଧ୍ୟ ପୂର୍ବପରି ପଚାରିଲେ, "ଆଜ୍ଞା, ଆପଣ କଣ ଏ ରାଜ୍ୟରେ ସମସ୍ତଙ୍କଠାରୁ ଅଧିକ ସୁଖୀ ନୁହନ୍ତି ?"

ଏହା ଶୁଣି ସେହି ଧନୀବ୍ୟକ୍ତି ଜଣକ ଉତ୍ତର ଦେଲେ, ମୋର ଜମିବାଡ଼ି, ଘରଦ୍ୱାର, ଧନସମ୍ପତ୍ତି, ଚାକର ଚାକରାଣୀ ସବୁ ଥିଲେ ମଧ୍ୟ ଏସବୁ ମୋ ମନରେ ଶାନ୍ତି ଦେଉ ନାହିଁ । ମୋର କୌଣସି ସନ୍ତାନ ନ ଥିବାରୁ ମୁଁ ବଡ଼ ଦୁଃଖିତ ଓ ଚିନ୍ତିତ । କେତେ ଦେଉଁ ଦେବତାଙ୍କୁ ପୂଜା କଲିଣି; କିନ୍ତୁ କେହି ମୋ ଦୁଃଖ ହରୁ ନାହାନ୍ତି ।"

ଧନୀ ବ୍ୟକ୍ତିଙ୍କ ପାଖରୁ ଏପରି କଥା ଶୁଣି ଅନୁଚରମାନେ ମନ ଦୁଃଖରେ ଫେରିଲେ । ଏଥର ସେମାନେ ଏକ ବ୍ୟବସାୟୀଙ୍କ ନିକଟକୁ ଗଲେ । ତାଙ୍କୁ କହିଲେ, "ଆପଣ ଏ ରାଜ୍ୟର ସବୁ

କେତେକଠାରେ ସୁଖୀ, ଆପଣେ ଆମ ସହିତ ରାଜାଙ୍କ ନିକଟକୁ ଆସନ୍ତୁ ।
ଅତିଥିଙ୍କ ସନ୍ଧ୍ୟ ଅଜାଣ କର୍କ ସେ ବେଗମ୍ବ ଦେବେ ।"

ବଂ ବ୍ୟବସାୟୀ : ଅନୁଚରମାନଙ୍କ କଥା ଶୁଣି କହିଲେ, ମୁଁ ସୁଖୀ କିମ୍ବା ... କହନ୍ତି । କାରଣ ମୁଁ ସୁନା, ରୂପା, ... ଆଦି ବେପାର କରି ... ପଇସା କମାଇଛି । ଏବେ ... ମଧ୍ୟ ... ସେ ମୋଠାରୁ ବଳ ଦୁଃଖୀ ଧନ୍ଧାରେ କୌଣସି ... ବେପାର ଯୋଗୁ ପିଲାଙ୍କ ଦେହ ଓ ସ୍ୱାସ୍ଥ୍ୟର ... ଦୂରର ..., ନିଜ ଦେହ ପ୍ରତି ମଧ୍ୟ ଦୃଷ୍ଟି ଦେଇ ପାରୁ ନାହିଁ । ଏଣୁ ସୁଖୀ କିପରି କହିବ ?"

ବ୍ୟବସାୟୀଙ୍କ ନିକଟରୁ ଫେରି ଏଥର ଅନୁଚରମାନେ ରାଜାଙ୍କର ବଡ଼ ... ଭେଟିଲେ । ତାଙ୍କୁ ପଚାରିବାରୁ ସେ କହିଲେ, "ହଁ ମୁଁ ରାଜଦରବାରରେ ବଡ଼ ଗୁରୁତ୍ୱ କରିଛି, ମାତ୍ର ମୁଁ ସର୍ବଦା ରାଜାଙ୍କ ଆଜ୍ଞାରେ ଚାଲେ । ମୁଁ ନିଜ ଇଚ୍ଛାରେ କୌଣସି କାମ କରିପାରେ ନାହିଁ । ତେଣୁ ମୋ ଭଳି ଦୁଃଖୀ ସଂସାରରେ ଆଉ କିଏ ଅଛି ?"

ବଡ଼ ପଣ୍ଡିତଙ୍କ ଘରୁ ଅନୁଚରମାନେ ବଡ଼ ଦୁଃଖରେ ଫେରିଆସି ଜଣେ କବିଙ୍କ ଘରକୁ ଗଲେ । ସେତେବେଳେ କବି ଗୋଟିଏ କବିତା ଲେଖିବାରେ ବ୍ୟସ୍ତ । ତାଙ୍କ ନିକଟକୁ ଯାଇ ସେମାନେ ପୁଣି ସେହି ପ୍ରଶ୍ନ ପଚାରିଲେ ।

କବି ଉତ୍ତର ଦେଲେ, "ଦୁନିଆରେ ଯାହାକୁ ପ୍ରକୃତ ସୁଖ କହନ୍ତି ତାହା ମୁଁ ଜୀବନରେ ଆଜଯାଏ ଜାଣି ନାହିଁ । ମୋର ନିଜ ଘର ଖଣ୍ଡିଏ ନାହିଁ, ଭଲ ପୋଷାକ ନାହିଁ । ମୁଁ ଖାଲି କଳ୍ପନା କରି ଲେଖାଲେଖି କରେ । ସେହି କଳ୍ପନାରେ ଯାହା କିଛି ସୁଖ ଅନୁଭବ କରେ । ତାହା କଣ ମନୁଷ୍ୟକୁ ପ୍ରକୃତରେ ସୁଖୀ କରିପାରିବ ?"

